ଟେକ ଯେ କହୁଛ ନିର୍ଗୁଣ ବ୍ରହ୍ମ ଯଜ ବୋଲି ହେ ଉଦ୍ଧବ
ଟାକର ତ କଥ ଘଣ୍ଟାବୃନ୍ତ ଆମ୍ଭେ କରିବୁଁ ଗୋବର୍ଦ୍ଧନଧର
ଉଦ୍ଧବ ହେ ! ଟଙ୍କଧର-ପଲ୍ଲୀ-ସ୍ଥାନ
ଟଳ ଉପବାସେ ପଡ଼ିଲେ କେବେହେଁ ନ କରେ ତୃଣ ଅଶନ ।୧୧।

ଠାକୁରଙ୍କଠାରୁ ଆସିଛ ଉଦ୍ଧବ ପ୍ରିୟସଖା ଭାବ ବହୁ
ଠିକ ବଖାଣ୍ ତୁମ୍ଭଠାରୁ ଆଉ ତ କହୁହିଁ ଶୁଣିଲୁଁ ନାହିଁ
ଉଦ୍ଧବ ହେ ! ଠାବ କଲୁଁ ସର୍ବସ୍ଥ
ଠଣ ଗୋପନାରୀ ହୃଦୟବାରତା ତୁମ୍ଭଙ୍କୁ ଜାଣିଥାନ୍ତି କହୁ । ୧୨ ।

ଡାକୁ ଯେ ଥାନ୍ତି ମୋହନମୁରଲୀରେ ଜଣେ ଜଣେ ନାମ ଧରି
ଡକାଡକି ହୋଇ ଏକ ଅରଣ୍ୟରେ ଯାଉଥାନ୍ତି ଗୋପନାରୀ
ଉଦ୍ଧବ ହେ ! ଡୋଳାରେଟ ହୋଇବାରୁ
ଡଙ୍ଗର ମଦନରସ ଅଁବେଇରେ ବଖାଣ୍ ବୁଝି ପାଶୋରୁ । ୧୩ ।

ଢଳ ଢଳ ଶ୍ୟାମଅଙ୍ଗ ଆମ୍ଭ ଅଙ୍ଗେ ଲାଗିଛି ନିବିଡ଼ ହୋଇ
ଢାଳିଲେ ଯେତେ ପ୍ରକାରେ ବ୍ରହ୍ମରଙ୍ଗ ଆଉ ଯେ ଜଡ଼ିବ ନାହିଁ ।
ଉଦ୍ଧବ ହେ ! ଢମ ନ ମଣ ଏ ରସ
ଢୋକଥାଇ ଯେହ୍ନେ ପୀୟୂଷ ସେ କେଲେ ନହଇ ଚଉଚରେ ବଶ ॥

ଏ ଘେନ ଏ ରସ ତ କର ଖଣ୍ଡିବା ହୃଦରେ ତୁମ୍ଭେ ବସ୍ତ୍ର
ଅକାଶ ଜଳ ବର୍ଷିଲେ କ ଶ୍ୱେତ ପାନ କରେ ଗଙ୍ଗାନୀର
ଉଦ୍ଧବ ହେ ! ଏହା ନ ଥଣ ମନକୁ
ଅକାର ନ କହ ନିରାକାରମାର୍ଗ କହ କେଉଁ କାରଣକୁ । ୧୫ ।

ତେଜ କେତେ ପ୍ରୀତି ଗଲ ଶିଖିପଛ ଉଦ୍ଧୁଳ ମ୍ଳାନ ଜୀବନ ।
ତୁମ୍ଭେ ଅସି ଜ୍ଞାନ କହୁଛ ଶୁଣିଲୁଁ ଏତେ ଆମ୍ଭ କର୍ମ ମ୍ଳାନ
ଉଦ୍ଧବ ହେ ! ତା ଭାବ ଭାବନା କର
ତନ୍ଦ୍ର ଅତନ୍ଦ୍ର ହେଲେ ଧନ୍ୟ ଜଗତେ ବୋଲାଇବୁଁ ଗୋପନାରୀ ॥

ଶିଶୁଁ କୃଷ୍ଣ ମାଟି ଖାଉଥିଲେ ଆସି ଧଇଲେ ଜନନୀ କର
ଥରୁଥାନ୍ତି ମାଟି ଖାଉ ନାହିଁ ବୋଲି ବୋଲୁଥାନ୍ତି ମାୟାଧର
ଉଦ୍ଧବ ହେ ! ଥରେ ବିସ୍ତାରିଲେ ପାଟି
ଅଦ୍ଭୁତ ମାଏ ଚାହିଁଲେ ଗର୍ଭରେ ପଡ଼ିଛି ବ୍ରହ୍ମାଣ୍ଡ କୋଟି ।୧୭।

ତେବେ ଯଶୋଦା ରୋଷ କରି କୃଷ୍ଣଙ୍କୁ ବନ୍ଧନ କଲେ ରଜ୍ଜୁରେ
ଦେଖିଅଛୁଁ ଗୋପପୁର ରଜ୍ଜୁଯାକ ନ ଅଣ୍ଟିଲା ବନ୍ଧନରେ
ଉଦ୍ଧବ ହେ ! ଦୁଃଖେ ତେଜି ନନ୍ଦରାଣୀ
ସାନବଡ଼ୁ ମୁଖ ଚାହିଁ ଲାଜ ପାଇ ରହିଲେ ଆଶ୍ଚର୍ଯ୍ୟ ମଣି । ୧୮ ।

ଯଦୁବର ସଙ୍ଗେ ଗୋପନାରୀ ରାତିରେ ମାତିଥିଲୁଁ ବୃନ୍ଦାବନେ
ଧୀରେ ଚାହିଁ ଦେବନାରୀମାନେ ରହି ବୋଇଲେ ଯାଉଁ ଭବନେ
ଉଦ୍ଧବ ହେ ! ଧନ୍ୟ ଏ ଗୋପିକାଗଣ
ଧରଣୀ ଅଙ୍କରେ ପରମବ୍ରହ୍ମଙ୍କ ସୁଖେ ବଞ୍ଚୁଛନ୍ତି ଦିନ । ୧୯ ।

ନିର୍ମଳହୃଦରେ ଘେନିଥାଏ ଯେଣୁ ନାରୀ ପରବ୍ରହ୍ମ ଧର୍ମ
ନୃପତି ମଣିକି ଭଜିଲେ ନକି ସେ ବନ୍ଦେ ବୃନ୍ଦାବାସୀ ନାମ
ଉଦ୍ଧବ ହେ ! ନୀରଜଯୋନିବାହନ
ନ କରଇ କେବେ ମାନସରୋବର ତେଜିଲେ ଗିଠ ଭୋଜନ ।୨୦

ପଣ୍ଡିତ ଯେବେ ଅଛିଥାନ୍ତି ହୃଦସ୍ଥ ବାରତା ଥାଅନ୍ତି ଅଟି
ପଠିଅଇ ଦେଲେ ଯେତେ ବଣାସରେ ଛାଡ଼ା ସିନା ଅଛୁ ଶୁଣି
ଉଦ୍ଧବ ହେ ! ପାପୀ ତଣ୍ଡୀ ଅମ୍ଭେ ନୋହୁଁ
ପରମାନନ୍ଦ ପରମାନନ୍ଦସୁଖ ତୁମ୍ଭେ ତା ପାଇବ କାହୁଁ । ୨୧ ।

ଯେତେ ସବୁ ଅବା କହନ୍ତୁ ଉଦ୍ଧବ ହୃଦସ୍ଥ ନିର୍ମଳ ନାହିଁ
ଫିଙ୍ଗିଦେଇ ତୁମ୍ଭେ ଭାଗବତଧର୍ମ ବନ୍ଦ୍ରିକଲ ଯୋଗ ପନ୍ଥି
ଉଦ୍ଧବ ହେ ! ଯାଇ ବିରହାନଳରେ
ଫୁଟେ ଜଳୁଛୁ ତନୁ ତୁମ୍ଭେ ଲବଣ ନ ଘଷ ଆଉ ଏଥିରେ ।୨୨।

ବନମାଳୀ ବନମାଳାରେ ମଣ୍ଡିତ ହୋଇଥିବେ ଉରଦେଶ
ବିବିଧ ରତ୍ନଭୂଷଣଗଣେ ଶୋଭା ବହୁଥିବ ବିଶେଷ
ଉଦ୍ଧବ ହେ ! ବନେ ବନେ ଧେନୁମାନ
ବେଣୁ ବଜାଇ ଚରାଉଥିବେ ଦେଖିବେ କବରୁଁ ନେଇ ଲୋଚନ ॥

ଯାଦବସ୍ୱାମୀ ଏବେ ମଥୁରାକଟକେ ମହାରାଜାପଣ କଲେ
ଭୂପତିନନ୍ଦିନୀମାନେ ଆସି ପାଦେ ଆଶ୍ରୟ କରି ରହିଲେ
ଉଦ୍ଧବ ହେ ! ପର୍ବିରେ ଛତ୍ରପତ୍ରରେ
ଭଗବାନ ଧେନୁ ବତ୍ସମାନ ଚିହ୍ନି ନ ଥିବେ ସଙ୍କୋଚଭରେ ।୧୪।

ମଦନମଦରେ ମତ୍ତ ହୋଇ କୃଷ୍ଣ ସଙ୍ଗତେ ବିଳାସ କରି
ମହା ଆନନ୍ଦସମୁଦ୍ରେ ବୁଡ଼ିଥିଲୁ ସକଳ ଚେଷ୍ଟା ପାଶୋରି
ଉଦ୍ଧବ ହେ ! ମଧୁଦାସୀ ମହିମାରେ
ମଦନ ସମ୍ପଦ ଆମୋଦ ସୁଖ ଲଭିବ ମଣି ମନରେ ।୧୫।

ଜଳଜ ବନଜ ବାମନ ଶ୍ରୀରାମ ପର୍ଶୁରାମ ହଳଧର
ଜାଣ ଏ ଉଦ୍ଧବ ମ୍ଳେଚ୍ଛମାରୀ କୃଷ୍ଣଅଂଶକଳା ଅବତାର
ଉଦ୍ଧବ ହେ ! ଜାଣି ଆମ୍ଭଠାରୁ ଯାଅ
ଯଶୋଦା ନନ୍ଦନ ସ୍ୱୟଂ ଭଗବାନ ହୃଦୟରେ ଧେନିଥାଅ ।୧୬।

ରାଜୀବନୟନ ସମ୍ମୁଖରେ ଉଦ୍ଧବ ଜଣାଇବ ତୁମ୍ଭେ ଯାଇଁ
ରହିଛୁଁ ବିପଦ କବାଟଭରୁ ପରାପ୍ତ ଅଭଙ୍ଗ ନୋହି
ଉଦ୍ଧବ ହେ ! ରକ୍ଷିବା ବ୍ରତ ଥିଲେ
ଜଳନ୍ତୁ ପ୍ରହ୍ଲାଦଙ୍କୁ ନରସିଂହ ଯେଉଁରୂପେ ରକ୍ଷାକଲେ । ୧୭ ।

ଲାବଣ୍ୟନିଧି ଯେତେ ଅନୁରାଗରେ ପୀରତି ଆରମ୍ଭ କଲେ
ଲୋକେ ନୋହିବ କେଉଁ ରାମା ଶରୀର ଧରି ଏ ମେଦିନୀ ତଳେ
ଉଦ୍ଧବ ହେ ! ଲୋଚନ ଆନନ୍ଦଦାତା
ଲୋଭ ବଢ଼ୁଥାଇ ଅଙ୍ଗକୁ ଅଙ୍ଗ ତା କରୁଥିଲେ ବିଲୋକନ ।୧୮।

ବସିଥିଲୁ ବାଲିବୁଦରେ ଶରଦଜନିରେ ଚନ୍ଦ୍ରକରରେ
ବେଣୁଧର ଆମ୍ଭ ଚିବୁକରେ କର ସରିହିଜ ଦେଲେ ଧୀରେ
ଉଦ୍ଧବ ହେ ! ବୋଇଲେ ଯାହା ଶ୍ରୀହରି
ବ୍ରଜବାସିମାନେ ସେହି ଭାବ ଗାଇ ମରୁଅଛୁଁ ଝୁରି ଝୁରି ।୨୯।

ଶ୍ରୀଧର ମଧୁପୁରକୁ ଗଲାଦିନୁ ଗୋପ ହୋଇଲା ହତଶ୍ରୀ
ଶୀର୍ଣ୍ଣ ହୋଇଛୁ ପ୍ରଭାତ- ଶଶିପ୍ରାୟ ସକଳ ଅଭୀରନାରୀ
ଉଦ୍ଧବ ହେ ! ଶୁଣେ ଚଳ କୃଷ୍ଣପୁରେ
ସମସ୍ତ କଥା ଜଣାଇବ ହୃଦୟ ଦ୍ରବିବ ଯେଉଁ ପ୍ରକାରେ ।୩୦।

ଶୁଣି ଗୋପୀଙ୍କ ବଚନ ସାଧୁବର ରଥ ଆରୋହଣ କଲେ
ସ୍ମରି ଗୋବିନ୍ଦ ପଦ ଅରବିନ୍ଦ ମଥୁରାପୁରେ ମିଳିଲେ
ଉଦ୍ଧବ ହେ ! ସତ୍ୱରେ ନନ୍ଦସୂନୁରେ ।
ଧୀରେ କରଯୋଡ଼ି ଅପସରି ପାଇ ଉଭା ହୋଇଲେ ଖଣ୍ଡଦୂରେ ।୩୧।

ଶ୍ରୀପତି ସନ୍ନିଧେ ଡାକି ଉଦ୍ଧବଙ୍କୁ ପୁଛନ୍ତି କୋମଳ କରି
ସନ୍ତୋଷ ହୋଇଲେଟିକି ଆମ୍ଭ ବଚନେ ସମସ୍ତ ଗୋପସୁନ୍ଦରୀ
ଉଦ୍ଧବ ହେ ! ଶୁଣେ ଛନ୍ତିଟିକି ବାର୍ତ୍ତି
ସତ୍ୟକରି ମୋତେ ବୋଲ ସାଧୁବର ବ୍ରଜବାସିଙ୍କ ପ୍ରୀତି ।୨।

ହେ ପ୍ରଭୁ ଗୋପୀମାନଙ୍କ ପ୍ରେମଭକ୍ତି କହିବାକୁ ଅଶକତ
ହତାଦର କଲେ ଯୋଗମିଥ୍ୟା ମଣି ରୂପ ଭଜନା ନିରତ ।
ସମସ୍ତେ ଯେ ! ହୋଇଛନ୍ତି ଜ୍ଞାନପୂର୍ଣ୍ଣ
ନନ୍ଦେକୃଷ୍ଣ ବିନା ମୁଖକୁ ତାଙ୍କର କ୍ଷଣେ ନ ଶୁଣିଲୁଁ ଆନ ।୩୩।

ଏମନ୍ତେ ସାଧୁ ଉଦ୍ଧବଙ୍କଠାରୁ ଶୁଣି ଗୋପୀଙ୍କର ଗତି
ଛଳଛନ୍ଦ କହନ୍ତି ନ ଭେଜାଇ ବ୍ରଜରମଣୀଙ୍କ ଅତି ପ୍ରୀତି
ଉଦ୍ଧବ ହେ ! ଛାଡ଼ଇ ନାହିଁ ମୁଁ ଗୋପ
ଛନ୍ଦରେ କୃପାସିନ୍ଧୁ ପ୍ରମନ୍ତ ଏ ଭବେ ଭକ୍ତେ ଶ୍ୟାମରୂପ ।୩୪।

# ରସକଦମ୍ବ ଚଉତିଶା

---

( ଲୋକନାଥ ଧୀବର )

ରାଗ—କଳସଗୌଡ଼ା

ଧୀବରକୁଳଭୂଷଣ ସ୍ୱାମୀ ଧୀବର କପଟପାଶା ଯୋଗେ ଯେପରି ଅନୁପ୍ରାସର ଅଧିବାସ ହୋଇ ରହିଅଛନ୍ତି ଏହି ରସକଦମ୍ବ ଚଉତିଶା ଯୋଗେ ଲୋକନାଥ ଧୀବର ମଧ୍ୟ ସେହିପରି ଅମରଯଶା ହୋଇ ରହିବେ । ମଧ୍ୟଯୁଗୀୟ କୁଳରେ ଏହି ଦୁଇ ପ୍ରତିଭାବାନ୍ କବିଙ୍କ ଜନ୍ମ ଅବଶ୍ୟ ଜାତି ଗୌରବ ଅଟଇ ବିଷୟ । ଲୋକନାଥ ଧୀବରଙ୍କର ଅନ୍ୟ କବିତା ମିଳନାହିଁ । ତେବେ ଏ ଚଉତିଶା ତାଙ୍କ ପ୍ରତିଭାର ପରିଣତ ଅବସ୍ଥାରେ ଲିଖିତ ପରି ବୋଧହୁଏ ।

କହନ୍ତି ରାଧିକା ଶୁଣ ଗୋ ଦୂତିକା କେନେ ଗଲୁ ମୋର ପ୍ରାଣି ।
କଦମ୍ବମୂଳେ ମୁଁ କ ରୂପ ଦେଖିଲି କାଳିଆ ହିରଙ୍ଗୀଠାଣି ଗୋ
ମିତ । କଣ୍ଠ ସ୍ୱରରେ ଗାବନ୍ତି ଗୀତ ଗୋ ।
କୁଞ୍ଜେ କୋକିଳ ଦେଖି ଚକିତ ଗୋ ।
ସେ ଯେ ଅଟନ୍ତି କାହାର ସୁତ ଗୋ । ୧ ।

ଖଣ୍ଡେନ୍ଦୁକୁ ଦେଖି ତରୁ ମୋ ବଳନ୍ତ ହୃଦେ ନ ରହିଲା ଦମ୍ଭ ।
ଖସି ପଡ଼ୁଥିଲା ଖଞ୍ଜାଇ ରଖିଲି କାଖରୁ ସଜଳକୁମ୍ଭ ଗୋ
ସଖି । ଖେଦ ଦେଉଛୁ ବସ୍ତ୍ରାନ୍ତ ରଖି ଗୋ ।
କ୍ଷଣେ ପିଛୁଡ଼ି ନ ପାରୁଁ ଆଖି ଗୋ ।
ଖର ଦୃଷ୍ଟିବାଣି ବନ୍ଧାଇ ଯୋଖି ଗୋ । ୨ ।

ଗମନ କରି ମୁଁ ଅଟି ନ ପାରଇଁ ନ ଚଳଇ ବେନି ପାଦ ।
ଗୋଡ଼କୁ ଅନାଇଁ ପ୍ରବରେ ରହିଲି ଶୁଣି ତା ମୁରଳୀନାଦ ଗୋ
ପୁଣ । ଗୋଟି ଚରଣ ତାହାକୁ ଅଣ ଗୋ ।
ଗଳା ପିଣ୍ଡୁରୁ ଛାଡ଼ ପରାଣ ଗୋ ।
ଗତେ ମୁରଳୀ ବଜାଇଲେ ପୁଣ ଗୋ । ୩ ।

ଘଟଣ ଶ୍ରୀମୁଖ ଦେଖିଲ ବେଳରୁ ଘୋଟୁଛି ଅନଙ୍ଗତାପ ।
ଘୂମାଇ ମୋ ଅଙ୍ଗ ଘାରି ହେଉଅଛି ଘାଉ ଲାଗିଲା ପରାୟେ ଗୋ
ମୋ'ତ । ଘୂମ ନିଦ୍ରା ନ ମାଡ଼େ କଷ୍ଟରେ ଗୋ ।
ଘୋଷା କରୁଛି କନ୍ଦର୍ପ ଯେତେ ଗୋ ।
ଘେନ ବୃନ୍ଦାବ କୁଞ୍ଜ କୁଞ୍ଜାନ୍ତେ ଗୋ । ୪ ।

ନବଘନ ଅଙ୍ଗ ଅଧର ସୁରଙ୍ଗ ଶୋହୁଛି ପୀତବାସକୁ ।
ଙଅ ମଦନ କି ନିନ୍ଦବନାଗର ତଥି ନ ପାଉଛି ତାଙ୍କ ଗୋ
ସେ ଯେ ! ନବତରୁଣୀଙ୍କ ଗର୍ବ ଗଞ୍ଜେ ଗୋ ।
ନାହିଁ ଏମନ୍ତ ପ୍ରକାରେ ହୃଦେ ଗୋ ।
ନୀପମୂଳେ କରୁଛନ୍ତି ବଜେ ଗୋ । ୫ ।

ଚେଷ୍ଟକର ତାଙ୍କ ଚନ୍ଦନଚିତାକୁ ଅଳପ ଅନାଇଁ ଦେଲି ।
ଚଉଦ୍ୱେର ଅଙ୍ଖି ହୃଦେ ଗଲା ଭୂକ ଗ୍ରହିବା ଛଟକେ ମଲି ଗୋ
ମୁହିଁ । ଚତୁ ବଉଳତ ଗଲି ହୋଇ ଗୋ ।
ଚିତ୍ତେ ଅଛି ଯାଇ ନ ପାରଇ ଗୋ ।
ଚଳ ନଣନ୍ଦ ହୋଇବା ପାଇଁ ଗୋ । ୬ ।

ଛନ୍ଦା ହୋଇଛନ୍ତି ହିଙ୍ଗୁଳବର୍ଣ୍ଣ ଚିତା ନିନ୍ଦୁଅଛି ଚନ୍ଦ୍ର ।
ଛବି ଦେଖିଲେ କି ଜନମ ହୋଇଛି ସ୍ୱର୍ଗରୁ ଆସିଛି ଇନ୍ଦ୍ର ଗୋ
ଚାରି । ଛଇ ଦିଶୁଛି ମୋହ ଆଗର ଗୋ ।
ଛପି ରହୁଛି ନୟନେ ମୋର ଗୋ ।
ଛୁଅ ନିତମ୍ବ କି ସୁନ୍ଦର ଗୋ । ୭ ।

ଜଡ଼ୁଛି ଅଳକା ଭାଲ ପରେ କିଏ ଏହି ଜାଣୁନ୍ତି ଭୁହି ।
ଯୋଗିଜନେ ଯାକୁ ଧ୍ୟାନ କରୁଛନ୍ତି ମାନବ କନ୍ଦନ୍ତି ସେହି ଗୋ
ଜଲ୍ଲ । ଯୁବା ଯୁବତୀ ମନ ମୋହିଲା ଗୋ ।
ଜନ୍ମ କେଉଁ ନାସ୍ତି ଭାକ୍ ଦେଲା ଗୋ ।
ଜୀବ ପ୍ରାଣ ସେହୁ ହରି ନେଲା ଗୋ । ୮ ।

ଝଟକ ଦଶୁଛୁ ଚୂଳରେ ଶୋଭିଛୁ ମୋହନ ମୟୂର ପକ୍ଷୀ ।
ଝାମଗନ୍ଧ ପ୍ରାପ୍ତ ମୋ ଦେହ ହେଉଛୁ ଝୁଣ୍ଟି ପଡ଼ୁଥିଲ ଦେଖି ଗୋ
ତାଙ୍କୁ । ଝୁର ମନ ତା ବଂଶୀସ୍ୱନକୁ ଗୋ ।
ଝାଡ଼କାରେ ଆଣହି ତାହାଙ୍କୁ ଗୋ ।
ଝଳ ଗୋପୀଙ୍କ ଧ୍ୟାନ ଯାହାଙ୍କୁ ଗୋ । ୯ ।

ଞକେଦୀବଚନଯୁକ୍ତ ବାଣୀ ଶୁଣି ଦୂତୀ ବୋଲଇ ସଙ୍ଗାତ ।
ଞାଲା କଷ୍ଟବାକୁ ବୈକୁଣ୍ଠ ଠାକୁର ମର୍ତ୍ତ୍ୟେ ହୋଇଛନ୍ତି ଜାତ ସେ
ହଗ । ନିତ୍ୟଧାମ ତେଜି ଅବତରି ସେ ।
ନାଶ କଲେ ପୂତନା ଅସୁରୀ ସେ ।
ନନ୍ଦରାଜା ସୁତ ଚକ୍ରଧାରୀ ସେ । ୧୦ ।

ଟୋକା ଗୋଷ୍ଠ କୃଷ୍ଣ ଟେକା ପ୍ରାପ୍ତ କରି ଟେକି ଧଇଲେ ମନ୍ଦର ।
ଟସକରପଣେ ସୁରପତି ଗଲେ ଟାଣ ଲାଗିଲେ ତାଙ୍କର ସେ ।
ନାଥ । ଟଙ୍କଧରଶପୂରିତ ଗାତ ସେ ।
ଟେକ ଚଢ଼େ ନନ୍ଦଘୋଷରଥ ସେ ।
ଟକେ ଯାହାଙ୍କୁ ଭଜନ୍ତି ପାର୍ଥ ସେ । ୧୧ ।

ଠାକୁରପଣେ ଯେ ଜାତ ହୋଇ ଗୋପେ ଯାମଳାକୁ ବଧ କଲେ
ଠିକେ ଅପରାଧୀ ନାଥିଅ ବୋଲଇ ମୋହର ଗର୍ବ ଗଞ୍ଜିଲେ ସେ
ପ୍ରଭୁ । ଠିକେ ସଂସାର ରଚନା ସବୁ ସେ ।
ଠାକୁରଙ୍କ ସଙ୍ଗତରେ ଥିବୁ ସେ ।
ଠୂଳ ଭସ୍ମ ବିପଦ ନାଶିବୁ ସେ । ୧୨ ।

ଡଗର ପଣେ ଦୂତିକା ବେଗେ ଯାଇଁ ଶ୍ରୀ ବୃନ୍ଦାବନେ ମିଳିଲେ ।
ଡାହୁକ ବୋଲଇ ଧନ୍ୟ ସେ ବନରେ କାଳିଅ କାହ୍ନୁ ଦେଖିଲେ ସେ
ଦୂତୀ । ଡମ୍ବରୁଧର ଯାଙ୍କୁ ସେବନ୍ତି ସେ ।
ଡାକ କହିଲେ ଶ୍ରୀକୃଷ୍ଣ ବଡ଼ ସେ ।
ଡହଡହ ହେମାଙ୍ଗୀର ସ୍ୱଚ୍ଛ ସେ । ୧୩ ।

ଛଳ ପଡ଼ୁଅଛୁ ଅଚେତନ ହୋଇ ମୋତେ ପଠାଇ କହୁଛୁ ।
ଛାଳେ ବଟକେତକ ନାଗ୍ରଣ ନ କର ଭ୍ରମ୍ମ ଯିବାକୁ ମାଗୁଁଛୁ ସେ ।
ରାଧା । ଛୋଳ ପିଇବ ଅଧରୁ ସୁଧା ସେ ।
ଛାଙ୍କିଅଛୁ ତାଙ୍କୁ କାମବାଧା ସେ ।
ଛାଳେ ଭ୍ରମ୍କ କରନ୍ତୁ ଶଙ୍କା ସେ । ୧୪ ।

ଏମନ୍ତ ବାଣୀ ଦୂତିକା ତନ୍ତ୍ରୁଁ ଶୁଣି ବୋଲନ୍ତି ନନ୍ଦ କୁମାରେ ।
ଜନାଙ୍କ କୁମାରୀ ଚନ୍ଦ୍ରସେଣା ନାଗ ଅମୃତ ଅଟନ୍ତି ମାଇ ଗୋ
ଜେହ୍ନା । ଏତ ଦୂଷଣ କଥା ଅଟଇ ଗୋ ।
ଅପଯରେ କି ସଧ କରଇ ଗୋ ।
ଏହା ସଂସାରରେ ଶୁଣା ନାହିଁ ଗୋ । ୧୫ ।

ଝେଣେ ଯେ କଷୋଗ୍ର ଅଙ୍କରେ ଘାରୁ ହୋଇ ଚନ୍ଦ୍ରମା ପାଙ୍କ
ଞଳ ତଣ୍ଡୁଲ ବୈଲ୍ୟକୀ ଦେଇଣ ଇଣଭକ୍ କଲେ ସୁଦ୍ଧ ହେ
ଦର । ତୀର୍ଥ ଙ୍ଗଲାସେ ଭ୍ରମ୍ମ ପଥ ହେ ।
ଝନ ଭପ୍ନବୋଲା ଝଗମ୍ମର ହେ ।
ନାହିଁ କର ଭବାନୀ ଶଙ୍କର ହେ । ୧୬ ।

ଥକା ହୋଇଥିଲେ କୃଷ୍ଣ ବାଣୀ ଶୁଣି ଦୂତିକା ବୋଲଇ ପୁଣି ।
ଥାପି ହେଇ ସ୍ନେହ ଏ ଦୁଇ ସହ୍ଲ ବର୍ପା ସରଲା କାମିନୀ ସେ
ରାଧା । ଥିର ବୁଦ୍ଧି କରନ୍ତି ଶରଧା ସେ ।
ଥିଲଜାତମିନୀ ସହ ନନ୍ଦା ସେ ।
ଥିଅଫଲ ହେଲ୍ପ କାମଧନ୍ଦା ସେ । ୧୭ ।

ଦୂତିକା ବଚନ ଶୁଣି ବେନୁପାଣି ଦୟା କରି ଆଜ୍ଞା ଦେଲେ ।
ଦନ ଅବଶେଷେ ନଶିଙ୍କେ ଅଶିବ କହି ବଳ୍ପଲ ହୋଇଲେ ସେ
ବସି । ଦେଲେ ବନ୍ଦନ ଯାହାଙ୍କୁ ଯେଣି ସେ ।
ଦଣ୍ଡ ଗଣୁଥିଲେ ଶୁଭ୍ରକେଶୀ ସେ ।
ଦୂତୀ ମିଳ କଲେ ଦର୍ପି ଦସି ସେ । ୧୮ ।

ଧ୍ରୁବ ବଉ ଭୋଟେ ନେବାକୁ କହୁଛନ୍ତି ଶ୍ୟାମ ସଖି ଯିବା ଏବେ ।
ଧୂଳି ଲାଗି ଅଙ୍ଗ ଧୂସର ହୋଇଛି ପ୍ରବେଶ ହୁଅ ଯା ଜବେ ଗୋ ।
ଏବେ । ଧାଡିକରେ ନ ଗଲେ ରୁଷିବେ ଗୋ ।
ଧାଇ ହୃଦେ ହୃଦ ଲଗାଇବେ ଗୋ ।
ଧୀରେ ଧୀରେ ଧରୁ ଚୁମ୍ବ ଦେବେ ଗୋ । ୯ ।

ନବ୍ୟବର୍ଣ୍ଣ ସାନ୍ଦ୍ର ସୁବେଶ ହୋଇଣ ଶିରେ କବରୀ ଗନ୍ଥିଲେ ।
ନାନା ଅଳଙ୍କାରେ ମଣ୍ଡନ ହୋଇଲେ ସ୍ୱର୍ଣ୍ଣ ଜ ଶାଢି ପିନ୍ଧିଲେ ସେ
ବାମା । ନବତରୁଣୀକୁଳଚନ୍ଦ୍ରମା ସେ ।
ନାରାୟଣମନୋହରୀ ରମା ସେ ।
ନାହିଁ କୋଟିକବ କେ ଶୋଭା ସମା ସେ । ୧୦ ।

ପୂର୍ବଦିଗ ଭାନୁ ପଶ୍ଚିମକୁ ଗଲା ପ୍ରହରେ ହୋଇଲା ସନ୍ଧ ।
ପଦ୍ମନେତ୍ରୀ ମତ୍ତପିକବଚନୀ ପଞ୍ଚବନ୍ଧ ଶୁଣ ବୃନ୍ଦ ଗୋ ।
ଯିବା । ପାନ ଭାଙ୍ଗି ତାଙ୍କୁ ଭୁଞ୍ଜାଇବା ଗୋ ।
ପାଛୁ ଗଲେ ଗନ୍ଧ କି କରିବା ଗୋ ।
ପର ଦେଖିଲେ ଲାଜ ପାଇବା ଗୋ । ୧୧ ।

ଫୁରୁଣା ହୋଇ ବେନି ସଖୀ ବାହାର ଚନ୍ଦ୍ରରଶ୍ମି ଦେଖି ଭାଳ ।
ଫାଇଁ କୋପବଶ ବୃଷଭାନୁ ଜେମା ଚନ୍ଦ୍ରକୁ ଦଅନ୍ତି ଗାଳି ରେ
ଶଶି । ଫଟା କପାଳକୁ ମୋର ଆସି ରେ ।
ଫଉଲାଇଛୁ କୋ ଖୋଭାସି ରେ ।
ଫର୍ଦ୍ଦା ରଖ ମୋର ମେଘେ ପଶି ରେ । ୧୨ ।

ବଧୂବଦନୀ ଅଜ୍ଞା ପାଇଁ ଚନ୍ଦ୍ରମା କଳାମେଘରେ ରହିଲା ।
ବ୍ରହ୍ମାଣ୍ଡ ଯାକ ଆଲୁଅ କାହିଁ ଗଲା ନିବଡ଼ ଅନ୍ଧାର ହେଲା ସେ
ବାଲୀ । ବଡ଼ ହରଷେ ପଥରେ ଚଳ ସେ ।
ବାଟ ଭଗାଏ ତାଙ୍କୁ ଶକୁନ ସେ ।
ବୃନ୍ଦାବନ ମଧ୍ୟେ ଯାଇ ମିଳ ସେ । ୧୩ ।

ଭଗବାନ ଭେଟେ ବୃଷଭାନୁଜେମା ମନରେ ଅନନ୍ଦ ହୋଇ ।
ଭଳ ନ ପାରଇ ରାଧାକୃଷ୍ଣ ନାମ ଧୀବର ନାଁଥିଅ ବାଇ ଯେ
ପୁଣି । ଭେଟେ ହରଷ ମୁରଲୀଧାରୀ ସେ ।
ଭୃଙ୍ଗ ଲଭନ୍ତି ଯେସନେ ନଳିନୀ ସେ ।
ଶ୍ରେଣୀ ପାଇଲେ କି ଅନ୍ନପାଣି ସେ । ୧୪ ।

ମାଧବୀ ଲତା ଉହାଡ଼େ ଚଳେ ଦୃଶ୍ୟ ଅନ୍ତର ହୋଇ ରହିଲେ ।
ମର୍କତଚତ୍ତର ଉପରେ ଶ୍ରୀକୃଷ୍ଣ ରାଧାଙ୍କୁ କୋଳେ ଧଇଲେ ସେ
ବେନି । ମାନ ଛେଡ଼ିଲେ ଚମକୀମଣି ସେ ।
ମନେ ହରଷ ମୃଗଲୋଚନୀ ସେ ।
ମନ୍ଦୋଗଲେ ଯେମନ ଯେମନ ଯେନ ସେ । ୧୫ ।

ଯଡ଼ାଯଡ଼ି ଠାଣି ବନ୍ଧୁ କି ନୂତନ ତମାଳବୃକ୍ଷେ କି ଲତା ।
ଜଳଧର କୋଳେ ଚପଳା ଖେଳନ୍ତି ପର୍ଯ୍ୟନ୍ତେ ହରେ ଶୋଭତା ସେ
ଛବି । କମ୍ପାୟମାନେ ହେମ କବି ସେ ।
ଜେମୁଁ ଲଭେ କି ମଦନ ଛବି ସେ ।
ଜମା କସ୍ତୁରୀ ହରିଦ୍ରା ଦ୍ରବ ସେ । ୧୬ ।

ରପଟ୍ଟୟା ଘନମଣ୍ଡଳ ଗୁଣ୍ଠିଲେ ରାଧିକା ହୋଇ ପ୍ରବଳ ।
ରତ୍ନ ରେଖପଦ୍ମ ନଥକର ଚନ୍ଦ୍ରେ ମକରନ୍ଦ ପାଟେ ଭୋଳା ସେ ।
ତହିଁ । ସ୍ୱର୍ଣ ଅର୍ଦ୍ଧପୂର୍ଣ ଅଳ୍ପ ହୋଇ ସେ ।
ରସବିନୋଦ କଲେ ସେଠାଇଁ ସେ ।
ରବି ଚନ୍ଦ୍ର ଭେଟାଭେଟି ନାହିଁ ସେ । ୧୭ ।

ଲପଟେ ଲପଟ ଭୁଜେ ଉଡ଼ୁଉଡ଼ୁ ହୃଦରେ ହୃଦ ଜଡ଼ିଲେ ।
ଲକ୍ଷ୍ମୀ ନାରାୟଣ ରସକ୍ରୀଡ଼ା ଦେଖି ରସବାରିଧି ବଢ଼ିଲ ସେ ।
ସୁଖ । ଲୋଡ଼େ ରସନାରସନା ଯୋଗ ସେ ।
ଲଜ୍ଜେ ପଳାଇଲା କାମଦୁଃଖ ସେ ।
ଲତା ତରୁକୁ ବେଢ଼ି ପୁଲକ ସେ । ୧୮ ।

ବସନ ପନ୍ଥଡ଼ ସୁବେଶ ସଜାଡ଼ି ଶ୍ରୀବୃନ୍ଦାବନେ ଖେଳଲେ ।
ବନମାଳୀ ବିଧୁମୁଖୀଙ୍କି ଦୃଷ୍ଟିକା ପରହାସରେ ଭାଷିଲେ ସେ ।
ଜାଣ । ବଡ଼ ଅନ୍ତ ତ ତୁମ୍ଭେ ଦାରୁଣ ହେ ।
ବଢ଼ିଅଛ ଗଣ୍ଡେ ସ୍ତନେ ତନ୍ତ ହେ ।
ବାରେ ଲଭାଅ ମଧୁସୂଦନ ହେ । ୨୯ ।

ସରୋଜବଦନୀ ହିରେ କର ଦେଇ ଶ୍ରୀକୃଷ୍ଣ ଶ୍ରମୁରେ ଭଣି ।
ଶାଶୁ ନଣନ୍ଦ ଗଞ୍ଜନ୍ତି ଯମୁନାକୁ ଯାଇଥିଲେ ନୀର ଅଣି ହେ ।
ବନ୍ଧୁ । ସେ ଯେ ବାହୁଥାନ୍ତି ରାନ୍ଧି ରାନ୍ଧି ହେ
ଶବ ଠାକୁ ବାଲ ବାନ୍ଧି ବାନ୍ଧି ହେ ।
ସରେ ନାହିଁ ଦନ କାନ୍ଦି କାନ୍ଦି ହେ । ୩୦ ।

ସହଜେ ସେ ଯେନ ଅସି ନ ପାରଇ ଲୋକ ଲାଜକୁ ମରଇ
ସୁରଭି ରଖି ମୁରଲୀ ବାଉଥାଅ ଝୁଣ ମରୁଥାଇ ମୁହିଁ ହେ
ହର । ସାଖୀ ସୋଦର ନାହିଁ ମୋହର ହେ ।
ସବୃଦନେ ମୁଁ ଦାସୀ ତୁମ୍ଭର ହେ ।
ସ୍ନେହେ ସୁଦୟା ଥିବ ଟି କର ହେ । ୩୧ ।

ସାରଙ୍ଗଧର ବୋଲନ୍ତି ସଖି ! ଅଗୋ ନ ଭାଳ ହୃଦକମଳେ ।
ସନବେଳରେ କାଲି ଭେଟ ହୋଇବ କେଳିକଦମ୍ବର ମୂଳେ ଗୋ
ଯାଅ । ଶଶିମୁଖି ! ତୁ ପ୍ରାଣ ମୁଁ ଦେହ ଗୋ ।
ସବୁନିଧି ତୁ ମୁଁ ରଙ୍କ ପ୍ରାପ୍ତ ଗୋ ।
ହିନା ତୋ ଯେନ ମଣ୍ଡ୍ୟେ ମୋ ଦେହ ଗୋ । ୩୨ ।

ହଂସଗମନୀ ସଙ୍ଗେ ଯେନ ଦୂତୀକ ଗୃହକୁ ଗମନ କଲେ ।
ହତ ବସ୍ତ୍ର ଯେନ ଗୋପାଳଙ୍କ ସଙ୍ଗେ ଗୋଷ୍ଠରେ ଯାଇଁ ରହିଲେ ସେ
ସ୍ୱାମୀ । ହର ନ ଧାରନ୍ତି ଧାନେ ଗମି ସେ ।

ହୃଦକଥା ଜାଣେ ଅନ୍ତର୍ଯ୍ୟାମୀ ସେ ।
ଦର୍ଶ କର୍ଣ୍ଣ ଏକା ମହାକାମୀ ସେ । ୩୩ ।

କ୍ଷିତୀଶ୍ୱର ବ୍ରହ୍ମା ବ୍ରହ୍ମାଣ୍ଡଠାକୁର ନ ପାବନ୍ତି ଯାର ଭେଟ ।
କ୍ଷୀଣ ଲୋକନାଥ ଧୀବର ବୋଲଇ ନ ଦେଖି ପାଇଲି କଷ୍ଟ । ମୁଁ ।
ପୁଣି । କ୍ଷୁଦ୍ରବୁଦ୍ଧି ଲେଖିଲି ନ ଜାଣି ମୁଁ ।
କ୍ଷୀରସୁଧା ଭାଗବତ ବାଣୀ ମୁଁ ।
କ୍ଷମାନିଧି କ୍ଷମାକର ଶୁଣି ହେ । ୩୪ ।



# ଫୁଲ ବଉଳବେଣୀ ଚଉତିଶା

ବାବାଜୀ ବୈଷ୍ଣବଚରଣ ଦାସ ବର୍ତ୍ତମାନ ଓଡ଼ିଶାର ସର୍ବଶ୍ରେଷ୍ଠ ଜୀବିତ କାବ୍ୟ କବି । ଆଧୁନିକ ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ବ୍ୟକ୍ତିଙ୍କ ଆଶା ଆକାଙ୍କ୍ଷା ତାଙ୍କ କବିତାରେ ପ୍ରକାଶ ନ ପାଇ ପାରୁଥାଏ କିନ୍ତୁ ଲକ୍ଷ ଲକ୍ଷ ବୈଷ୍ଣବଙ୍କ ଭକ୍ତିମୟ ପ୍ରାଣର ପ୍ରତିଧ୍ୱନି ତାଙ୍କରି କବିତାରେ ଶୁଣା ହୁଏ । ପ୍ରାଚୀନ ଶବ୍ଦ ଯୋଜନାରେ ବାବାଜୀ ମହୋଦୟ ଏପରି କୌଶଳ କରିଅଛନ୍ତି ଯେ ତାଙ୍କ କବିତା ପଢ଼ିଲେ ସେ ପ୍ରାଚୀନ କି ନବୀନ କବି ଜାଣି ହୁଏ ନାହିଁ । ଏ ଚଉତିଶା ସହିତ ଅନ୍ୟାନ୍ୟ ଚଉତିଶା ବାବାଜୀ ମହୋଦୟ ମଧୁଚକ୍ଷୁ ଦାନ କରି ଆମ୍ଭକୁ ଯଥେଷ୍ଟ ଅନୁଗୃହୀତ କରିଅଛନ୍ତି ।

କନକାଙ୍ଗୀ ଧନୀ ରାଇ ଗୋ ! ଫୁଲ ବଉଳବେଣୀ ।

କଦମ୍ବମୂଳିଆ ଚନ୍ଦ୍ରକାଚୂଳିଆ
କହୁଛି ତୋ ଲାଗି ବାଇ ଗୋ ! ଫୁଲ ବଉଳବେଣୀ ।୧।

ଖଣ୍ଡଖୀରଖିଆ ଭରି ଗୋ ! ଫୁ, ବ,
ଖେଳ-ଖିଆଳିଆ ରାଧେ ବୋଲି ଡାକି
ଖରାବେଳେ ବାଏ ବଂଶୀ ଗୋ ! ଫୁ, ବ, ।୨।

ଗଣ୍ଠିଧନ ଜାଣୁ କି ନା ଗୋ ! ଫୁ, ବ,
ଗୋକୁଳସୁନ୍ଦର ଗୋପ ରମଣୀଙ୍କର
ଗଳା ମରକତ ମୀନା ଗୋ ! ଫୁ, ବ, ।୩।

ଘନ୍ତୁଣ ଶ୍ରୀମୁଖ ତୋର ଗୋ ! ଫୁ, ବ,
ଘନ ବରନିଆଁ ଶ୍ରୀବୃନ୍ଦାବନିଆଁ
ସବୁରି ଦୁଃଖପାସୋରା ଗୋ ! ଫୁ, ବ, ।୪।

ଙ ଉପମା ଅଛି କି କାହିଁ ଗୋ ! ଫୁ, ବ,
ଙ ରୂପ ଦେବା ଶୋଭା ଅତି ମନ ଲୋଭା
ଙ ଭବ ଭୁବନେ ନାହିଁ ଗୋ ! ଫୁ, ବ, ।୫।

ଚତୁର ନାଗର ବର ଗୋ ! ଫୁ, ବ,
ଚନ୍ଦନପାଟୁଆ ଧଇର୍ଯ୍ୟଲୁଟୁଆ
ଚମତ୍କାର ବେଶ ତାର ଗୋ ! ଫୁ, ବ, । ୬ ।

ଛଇଳୀ ଚନ୍ଦ୍ରମାମୁଖି ଗୋ ! ଫୁ, ବ,
ଛାଡ଼ି ଦେବେ ସତୀ ପତିବ୍ରତକୁ
ଛଇ ଛଟା ଭଙ୍ଗୀ ଦେଖି ଗୋ ! ଫୁ, ବ, । ୭ ।

ଜଗତମୋହନ ଠାଣି ଗୋ ! ଫୁ, ବ,
ଜନମି ଅଛନ୍ତି ଏ ବ୍ରହ୍ମମଣ୍ଡଳେ
ଢିଲା କରିବାକୁ ପାଣି ଗୋ ! ଫୁ, ବ, । ୮ ।

ଝଳ ନୀଳମଣି-କାନ୍ତି ଗୋ ! ଫୁ, ବ,
ଝୁମ୍ପ ଝୁମ ପାଦ ନୂପୁର ନାଦରେ
ନାଶେ ଚିତ୍ତ ଚମକାନ୍ତି ଗୋ ! ଫୁ, ବ, । ୯ ।

ନିକୁଞ୍ଜ-କାନନ-ବିହ୍ୱଳ ଗୋ ! ଫୁ, ବ,
ନିତି ନୂଆ ନୂଆ ଭାବ ବିନୋଦିଆ
ନାଗରୀ ମାନସ ଭୁଲା ଗୋ ! ଫୁ, ବ, । ୧୦ ।

ଟହକ ମୁରୁକି ହସା ଗୋ ! ଫୁ, ବ,
ଟଳାଇ ଦିଅନ୍ତି ଦମ୍ଭ ଅଭିମାନ
ଟକେ ଭୁଲାଇଲେ ଭାଷା ଗୋ ! ଫୁ, ବ, । ୧୧ ।

ଠଣ ସୁନ୍ଦର ମୂରତି ଗୋ ! ଫୁ, ବ,
ଠାକୁର ପଣକୁ ଯୋଗ୍ୟ ଏକା ସେହୁ
ଠକିଅଛି ମୋ ମତି ଗୋ ! ଫୁ, ବ, । ୧୨ ।

ଡମରୁ ସରୁକଟିଆ ଗୋ ! ଫୁ, ବ,
ଢୋଲ ଢାଲ ବାଜେ ଶୁଣିବା ମାତ୍ରକେ
ଢଳାଇ ଦିଅନ୍ତି ହିଆ ଗୋ ! ଫୁ, ବ, । ୧୩ ।

ଢମାଳ ସଙ୍ଗୀତ ଗାଇ ଗୋ ! ଫୁ, ବ,
ଢଙ୍ଗେ ଭଙ୍ଗେ ବନ ନାଚ ଅଛୁଥାନ୍ତି
ମୋହନ ବେଣୁ ବଜାଇ ଗୋ ! ଫୁ, ବ, । ୧୪ ।

ଅଣିମାଦ ଅଷ୍ଟନିଧି ଗୋ ! ଫୁ, ବ,
ଅଛନ୍ତି ସବୁଯାକ କୃଷ୍ଣ ପାଦତଳେ
ଅମର ଭୁବନ ସିଦ୍ଧି ଗୋ ! ଫୁ, ବ, । ୧୫ ।

ତେତ ଦାଣ୍ଡିକ-ଗୋସ୍ୱାମୀ ଗୋ ! ଫୁ, ବ,
ତମାଳ ଶ୍ୟାମଙ୍କ ତାଉ ପଛ ହେବେ
ତପସ୍ୟା ଯେ ଥିବ କରି ଗୋ ! ଫୁ, ବ, । ୧୬ ।

ଥରେ ଯେ ଦେଖିବ ତାଙ୍କୁ ଗୋ ! ଫୁ, ବ,
ଥୋଇ ଦେବ ନଟେଁ ଭୁଲି ଲାଜ ବନ୍ଧୁ
ଥିବର ଯେ ଗାରିମାକୁ ଗୋ ! ଫୁ, ବ, । ୧୭ ।

ଦରିଦ୍ର ସଙ୍ଖାଳ ସେ ତ ଗୋ ! ଫୁ, ବ,
ଦରପୂଠା କଳା— କଞ୍ଜଗନ୍ଧଦଳା—
ଦେହ ମୃଦୁ ଯଦନ୍ଜେ ତ ଗୋ ! ଫୁ,ବ, । ୧୮ ।

ଧଇର୍ଯ୍ୟ ଗୁର ବା କେତେ ଗୋ ! ଫୁ, ବ,
ଧସ୍ୱମଣ୍ତ୍ରନା କେ ଭଜ ନ ହୋଇବ
ଧୀର ଲଳିତ ପ୍ରଗାଢେ ଗୋ ! ଫୁ, ବ, । ୧୯ ।

ନବ କିଶୋର ବୟସ ଗୋ ! ଫୁ, ବ,
ନର୍ତ୍ତନ ମାଧୁର୍ଯ୍ୟ ନବୀନ ବିଭୂଷଣ;
ନବ ନଟବର ବେଶ ଗୋ ! ଫୁ, ବ, । ୨୦ ।

ପରମାନନ୍ଦଙ୍କ ଭାବେ ଗୋ ! ଫୁ, ବ,
ପଦତଳ ଦାସୀ ହେବାକୁ ମନାଷି
ପାଙ୍ଗି ରମା ଝୁରିବେ ଗୋ ! ଫୁ, ବ, । ୨୧ ।

ଫଗୁଅଧରୀ ରାଧିକେ ଗୋ ! ପ୍ର, ବ,
ଫଣୀ ମର୍ଦ୍ଦନାନ୍ତ ପ୍ରୀତିବର୍ଦ୍ଧନାର୍ଥଂ
ଫାନ୍ଦରେ ନ ଭୁଲିବ କେ ଗୋ ! ପ୍ର, ବ, । ୧୨ ।

ବଙ୍କିମ ତା ଅନାଉଣି ଗୋ ! ପ୍ର, ବ,
ବଳେ ଝିଙ୍କିନାଏ ଚୁମ୍ବକ ପଥରେ
ବରବଧୂ ବାଇଆଣୀ ଗୋ ! ପ୍ର, ବ, । ୧୩ ।

ଭଙ୍ଗିଅ ବନ୍ଧୁ ସଙ୍ଗିଅ ଗୋ ! ପ୍ର, ବ, !
ଭଲ୍ଲ ବମ୍ପିଥ ସେ କାହ୍ନୁ ଶିଖି ଅଛୁ
ଭେଳକିଲଗା ରଙ୍ଗିଅ ଗୋ ! ପ୍ର, ବ, । ୧୪ ।

ମୟୂର ଚନ୍ଦ୍ରିକା ଛନ୍ଦ ଗୋ ! ପ୍ର, ବ,
ମଥାରେ ସେ ବନ୍ଧ ବାମେ ଖୋସି ଥାଏ
ମଞ୍ଜୁ ଗୁଞ୍ଜମାଳ ଯେନ ଗୋ ପ୍ର, ବ, । ୧୫ ।

ଯଦି ମତି ଭୁଲ ଶ୍ୟାମ ଗୋ ! ପ୍ର, ବ,
ଯନ୍ତ୍ର ମୂରଲୀଟି ଫୁଙ୍କି ସେ ଜାଣଇଁ
ଯତନେ ଡାକଇ ନାମ ଗୋ ! ପ୍ର, ବ, । ୧୬ ।

ରସବନ୍ତ ଚକ୍ରବର୍ତ୍ତୀ ଗୋ ! ପ୍ର, ବ,
ରଙ୍ଗିମାଧରେ ତା ମନ୍ଦ ମନ୍ଦ ହାସ
ରଖି ନ ହଅଇ ବୃଦ୍ଧି ଗୋ ! ପ୍ର, ବ, । ୧୭ ।

ଲପନ ଚନ୍ଦ୍ରମା ଶିରୀ ଗୋ ! ପ୍ର, ବ,
ଲକ୍ଷ୍ୟ ନାହିଁ ତାକୁ କୋଟିଏ ବ୍ରହ୍ମାଣ୍ଡେ
ଲାବଣ୍ୟାମୃତ ମାଧୁରୀ ଗୋ ! ପ୍ର, ବ, । ୧୮ ।

ବନମାଳୀ ବକ୍ଷ ତଟ ଗୋ ! ପ୍ର, ବ,
ବରନବ ଜବା ନୀଳେନ୍ଦ୍ର ମଣିର
ବେନି ଫାଳିଆ କବାଟ ଗୋ ! ପ୍ର, ବ, । ୧୯ ।

ଶରଣବତ୍ସଳ ସେ ତ ଗୋ ! ଫୁ, ବ,
ଶୁଣିଥିବୁ କାନେ ଶିଶୁ ଦନୁ ପତ୍ନୀ
ଶକଟା କଲେ ନିପାତ ଗୋ ଫୁ, ବ, । ୩୦ ।

ଷଣ୍ଢବକା ଅଘା ଦୈତ୍ୟ ଗୋ ! ଫୁ, ବ,
ଷଟ୍‌ପଦ ନିନ୍ଦକ ହସ୍ତେ ନାଶଗଲେ
ଷଡ଼ଯନ୍ତ୍ର କଲ ସେତ ଗୋ ! ଫୁ, ବ, । ୩୧ ।

ସଂସାର ସାର ମୋହନ ଗୋ ! ଫୁ, ବ,
ସକଳ ଗୁଣରେ ଶ୍ରେଷ୍ଠ ସେ ଅଟନ୍ତି
ସମ କାହିଁ ତାଙ୍କୁ ଆନ ଗୋ ! ଫୁ, ବ, । ୩୨ ।

ହଠତମନ୍ମଥ ହର ଗୋ ! ଫୁ, ବ,
ହେ ସଖିଲେ ତୋର ହେବେ ନଷ୍ଟେଁ ବର
ହୃଦରେ ଥାଅ ବଣ୍ଟିଶ ଗୋ ! ଫୁ, ବ, । ୩୩ ।

କ୍ଷଣକାନ୍ତି-କାନ୍ତି ଧନ ଗୋ ! ଫୁ, ବ,
କ୍ଷୀଣ-ମଧ୍ୟା ! ତୋର ପଦାବ୍ଜ କଙ୍କଣ
କ୍ଷେମେ ବୈଷ୍ଣବ ଅଜ୍ଞାନୀ ଗୋ ! ଫୁ, ବ, । ୩୪ ।

---

# କୋଳାହଳ ଚଉତିଶା

ମଧୁଚନ୍ଦ୍ର ଭୃଗୁଙ୍କ ଦ୍ୱାରା ପ୍ରକାଶିତ କୋଳାହଳ ଚଉତିଶା ପୁସ୍ତକରେ ଏ ଚଉତିଶା ଲେଖା ହୋଇଥିବାରୁ ଏହାର ନାମ କୋଳାହଳ ଚଉତିଶା ହୋଇଅଛି । ଏ ଚଉତିଶା ଯେ କେବଳ କମନୀୟ କହିଲେ ପର୍ଯ୍ୟାପ୍ତ ହେବ ନାହିଁ । ଏହାର କେତେକ ପଂକ୍ତି ଉପରେ ପ୍ରତିଭାର ଛାପ ମୁଦ୍ରା ଅଛି । କବିଙ୍କ ଶେଷପଦ ନାମ ପୋଥିରେ ନମିଳିବାରୁ କବି ଅଜ୍ଞାତ ରହିଲେ ।

(ରାଗ—କୋଳାହଳ)

କୃଷ୍ଣ ବିଚ୍ଛେଦରେ    କୁସୁମ ଶରରେ
ଦୁଃଖୀ ହୋଇ ଗୃହେ ଚନ୍ଦ୍ରମୁଖୀ ।
କରଇ ସନ୍ତାପ    ଚନ୍ଦ୍ର କାନ୍ତି-ମୁଖ
ବସି କରଜରେ ମହୀ ଲେଖି ।
କଞ୍ଜ-ନୟନରୁ
ବହଇ କଜ୍ଜ୍ୱଳ-ଜଳ-ଧାର ।
କମଳନୟନ ଘନଶ୍ୟାମ ବିନୁ ତାହା ମନ ଅଉ ନୋହେ ଥିର । ୧ ।
ଖଣେ ଖଣେ ଶ୍ୱାସ    ପକାଇ ବିରସ
ଖଣକେ ଅଧୀର ହୋଇ ବାଳା ।
ଖଣେ ଖଣେ ଜ୍ୱାଳ    ବଢ଼ଇ ପ୍ରବଳ
ଖଣକେ ଝାଙ୍କୋରେ ପ୍ରେମମାଳା ।
ଖୀଣୋଦରୀ ତନୁ ।
ଅତନୁ ଶରରେ ହୋଇ ତନୁ ।
ଖେଳିବା ହସିବା ବଚନ ଭାଷିବା ସବୁ ସୁଖ ପାସୋରଇ ମନୁ । ୨ ।
ଗୋରୀ ସୁକୁମାରୀ    ନବୀନ କିଶୋରୀ
ଘର ଘୋର ବନ ପ୍ରାୟେ ମଣେ ।

ଗୀତ ବାଦ୍ୟ ନୃତ୍ୟ— ରସେ ତାହା ଚିତ୍ତ
ନ ରସେ କସ୍ତୁରି କାମବାଣେ ।
ଗୁରୁ-ନିତମ୍ବିନୀ ।
ଗୋକୁଳ-ଚନ୍ଦ୍ରମା ଗୁଣ ଗୁଣି ।
ଚିତ୍ତବର-ଧର ହେ ବ୍ରଜସୁନ୍ଦର ! ବୋଲଣ ରୋଦନ କରେ ପୁଣି ।୩।

ଘନଜଘନାର ଘନଣସ୍ତନାର
ଭାର ନ ସହଇ ନିଶି ଦିନ ।
ଘନଶ୍ୟାମ ଧନ ପାଇଁ ତାର ମନ
ନିରନ୍ତରେ ହୋଏ ଛନ୍ନ ଛନ୍ନ ।
ସଖୀଜନେ ଦେଖି ।
ଦେଖାଇ କହିଲେ ହେନ୍ଦବାଣୀ ।
ଦେଖନଇ ଜାହିଁ କମଳଦଳନେନୀ ରାଧିକା ନାଗରୀଶିରୋମଣି । ୪ ।

ନ କରେ ଅହାର ନ କରେ ବିହାର
ନ ବସଇ ଆନ୍ ଶୟନ ରେ ।
ନ ବାନ୍ଧଇ କେଶ ନ ହଇ ସୁବେଶ
ନ ଦେଖଇ କିଛି ନୟନରେ ।
ନାନା ଉପଚାର ।
ନୋହିଲେ ଚମକ ପଡ଼େ ଅଙ୍ଗ ।
ନାଥ ନାଥ ବୋଲି ନୟନ ବୁଜଇ କହିଲେ ବୋଲେ ହେ ବିଶ୍ୱରଙ୍ଗ ॥

ଚନ୍ଦନ ପବନ ଗରଳ ସମାନ
ଚନ୍ଦ୍ରକର ଚଣ୍ଡକର ପ୍ରାୟେ ।
ଶୁକଅଙ୍ଗେ ଶୁଣି ମନ୍ତ୍ର ପିକବାଣୀ
ଚିତ୍ତରେ ଲଭଇ ମହାଭୟେ ।
ଶୃଙ୍ଗ କୁମିକର ।

ଚମ୍ପକବରଣୀ କଳେବର ।
ଚହୁଁ ଚହୁଁ ପାଣ୍ଡୁବର୍ଣ୍ଣିକୁ ଭଜିଲା ଦିବସେ ଯେସନ ଶଶଧର । ୬ ।

ଛଦ୍ମମଣ୍ଡଳୀ ବ— ରହ ଦଶା ଦେଖି
ଛୋଡକର ଦୂତୀ ଗଲା ଚଳି ।
ଛଟକେ ପ୍ରବେଶ ହୋଇ ବୃନ୍ଦାବନେ
ଛଛନ୍ଦେ ଭେଟିଲା ମଧୁହାସ୍ୟ ।
ଛାଡ଼ି ଖରଶ୍ୱାସ ।
କହିଲା ଶୁଣ ହେ ବ୍ରଜରାୟେ ।
ଛୀର ଦାହୀ ଧାତ୍ରୀଠାରୁ ବ ଶିଖିଲ ଯୁବତୀ ବନାଶନ ଉପାୟେ । ୭ ।

ଜାଣିଲି ସଂସାର ମଧ୍ୟେ ଅସୁନ୍ଦର
କଥାଏ ସୁନ୍ଦର ହେଲା ତବେ ।
ଜଗତ ମୋହନା ରାଧା ପ୍ରାଣ ଘେନା
କଥାରେ କାରେଣୀ ହେଲ ଏବେ ।
ଜଗମୋହନ ହେ !
ଏଠେଁ ନାହିଁ କିଛି ପଉରଷ ।
ଯେବେ ବା ଅବଳା ଯୁବତୀ ନହନ୍ତା ତେବେ ବା ହୁଅନ୍ତା ତହିଁ ଯଶ ॥

ଝୁରୁଥାଅ ବସି କୁଞ୍ଜବନେ ପଶି
ଯାହା ଅଙ୍ଗ-ସଙ୍ଗ ପାଇବାକୁ
ଝଷକେତୁ ବାଣ— ଘାତରେ ପରାଣ
ଯିବାବେଳେ ଦୟା ନାହିଁ ତାକୁ ।
ଝାଡ଼ିବନୋଦ ହେ ।
ଝିମିଟିକେ କଥା ଥିବ ଅଉ ।
ଝଲକବରନା ଝଳ ଗୌରୀ ଦେଖ ମରୁଛି ଜୀବନେ ଥାଉଁ ଥାଉଁ ॥

ନବ ଚନ୍ଦ୍ରକଳା ପରାୟେ ଅବଳା
ପଡ଼ିଛୁ ଅବନୀ ଶୟନରେ ।
ଜେବନୀରେ ଥିବି ଯିବ ବୋଲି ଭାଷ
ନିଦ୍ରା ନ ମଡ଼ଇ ନୟନରେ ।
ନନ୍ଦନନ୍ଦନ ହେ !
ନୋହୁଅଛୁ ତାର ଵ ବେଦନା ।
ନିର୍ମଳ ହୃଦରେ ତୁମ୍ଭଙ୍କ ଭଜିବା ଫଳ ପାଇବାର ଏହି ଦିନା । ୧୦ ।

ଟେକ ଯେ ଥିଲ ତ— ଭୁଣାଦିନ୍ତୁ ବୋଲି
ଟୁକାଏ ଦୁର୍ବଳ ନାହିଁ ଚିତ୍ତ ।
ଟଙ୍କ ଧର ଶସ୍ତ୍ର ବିପକ୍ଷ ସମୟେ
ଟୁକାଏ ଦୁର୍ବଳ ନାହିଁ ଚିତ୍ତ !
ଟାଣ ଭାଳିଲା ହେ !
ଯେତେକରୂପେ କରିଥିଲ ଅଙ୍ଗ
ଟାହି ନ ମଣି ସନ୍ଧିରେ ଚଳିଥିଲ ବିଳମ୍ବ ନ କଲ ପୀତବାସ । ୧୧ ।

ଠାଠି କର ଦୃଷ୍ଟି- ବାଣୀ ଶୁଣି ମନ
ମନ୍ଦ ହସି ହୋଇ କର ହର ।
ଠାକୁରାଣୀଙ୍କର ପୁରଟେ ପ୍ରବେଶ
ରଜନୀ ସଜନୀ କର ଧର ।
ଠଣଚନ୍ଦ୍ରମୁଖୀ ।
ସଂହତି ଶ୍ରୀମୃଗଦରଶନେ ।
ଠୁଳ ହୋଇ ସବୁ ଅନୁରାଗମାନ ପ୍ରବେଶ କରନ୍ତି ଅତି ମନେ । ୧୨ ।

ଡୋଳା ଡିଭୁଲା ଡାଳିମ୍ବ ବୀଜଦନ୍ତୀ
ଡମ୍ବରୁମଧ୍ୟାର ଦେଖି କ୍ରୋଧ ।
ଡକା କର ଢାମ ବାମ ହୋଇ ସମ-
ଅନୁଜ କରନ୍ତି ବାରେ ବଧ ।

ଭୋଳାମଣ୍ଡନ ରେ !
ନାହିଁ ମୋର କିଛି ଅପରାଧ ।
ଝମ୍ପରୁ ଧର ବଦନ ବର୍ଣ୍ଣେଗରେ ନ କରାଅ ଅଉ ବାରେ ବଧ । ୧୩ ।

ଛମ କନ୍ଦ୍ର ନାହିଁ ତୋତେ ନାନାବେଳେ
ନାହିଁ ନାହିଁ ଅନ ପ୍ରତିକାର ।
ଚାଲିବା ନପୂରେ ଅନେ ଗୁହିଁ ବାର
ବଥାନ୍ତୁ ବନ୍ଧୁ ଜପୁମ ମୋର ।
ଚାଲିନପୂନା ରେ !
ଚାଲ ଏବେ ମୋତେ ଗୁହିଁ ବାରେ ।
ଚକ୍ଷା ଦଥାନ୍ତୁ ଚକ୍ରାନ୍ତେ କା ନାମନ୍ତ ଏକା ପର ୀକ! ଦେଖି ବାରେ ॥

ଅନଲ ପ୍ରାୟେ ଆପଣା ଅପାରକୁ
ବଗ୍ରବ ନ କରେ ଯେଉ କାମ ।
ଅନୁଭବ କଲେ ନ ଜାଣଇ କିଛି
ଅବିବେକ ହେଲେ ନାହିଁ ସର୍ମ ।
ଅରେ ପ୍ରାଣମଣି !
ଅନ୍ତର କଥା ଏ ଅଛି ଶୁଣି ।
ଅମ୍ଭ ଦୁହିଙ୍କି ତା ବନତା ମାଗୁଛୁ ପାଇଲେ ଯାଉଛୁ ଏହିକ୍ଷଣେ । ୧୪ ।

ତାହାର ବଦର ସହଜେ ମୁଁ ତୋତେ
ମାଗଣ ତାହାର ବନତାକୁ ।
ତୁହି ତ କୃପଣ ସେ ଦାନ ଦେବାକୁ
ଖନ୍ ହେଲା କାମ ଦାଗି ତାକୁ ।
ତୋହ ପ୍ରସନ୍ନରେ !
ତାହା ସ୍ବଜନୀବ ସେହି ପାଉ ।
ହେ ତ୍ରୈଲୋକ୍ୟମୋହନ ! ତ୍ରିବଳିଶୋଭନ ! ମୋହ ମନୋରଥ ପୂର୍ତ୍ତି ହଉ ॥

ଥିରଗମନୀ ବାମଦେବ ମହିମା
ଶୁଣି ନାହିଁ କରେ ଥୟ କଉ ।
ଥାପୁ ନୟନ ଅନଳେ ପୋଡ଼ି ଯାଉ
ଅଙ୍ଗେ ସେ ବୁହାଇଲା ନାସ୍ତି ।
ଥିରମଦନା ରେ !
ଥରଥରକେ ସେ ଯେ ଉଦଣ୍ଡ ।
ଥିଲ କତ କେତେ ପ୍ରକାରେ ବହୁତ୍ଥ ଅନୁଭବରୁ ଅଛୁ ପିଣ୍ଡ । ୧୭ ।

ଦୟିତଜଳନିଧି ଦୟାକର ମୋରେ
ଦୂର କର ମନୁ ଅଭିମାନ ।
ଦାସ ଦୋଷକାଶି ହେଲେ କ୍ଷମା କର
ପ୍ରଭୁପଣର ଭୁ ନକେତନ ।
ଦୁଃଖନାଶିନି ରେ !
ଦ୍ୱିରଦଗମନୀ ପ୍ରାଣେଶ୍ୱର !
ଦ୍ୱିଜରାଜମୁଖି ! ଯିହ୍ନୁଁ କିନା ମୋତେ ପ୍ରସନ୍ନବଦନେ ହସି କଉ । ୧୮ ।

ଧିକ ଯାଉ ମୋର ପ୍ରାଣ ଧନ ! ତୋର
ଦେଖିଲି ଶ୍ରୀଅଙ୍ଗ ଅଭୂଷଣ ।
ଧାତା ଏହା କଲା ଏ ଜୀବନ ଗଲା-
ବନ୍ଧୁ ତୋତେ ଏହା କି ଦୂଷଣ ।
ଧୃତଧ୍ୱଂସିନି ରେ !
ଧୀରେ ଅଲ୍ପ ଦିଅ ମୃଦୁବାଣୀ ।
ଧ୍ରୁବଲୋକକୁ ଶୁଭଯାଉ ଶ୍ରୀଅଙ୍ଗ ମଣ୍ଡଇ ମଣ୍ଡନ ଗୁଣମଣି । ୧୯ ।

ନାଗଗୀରଚନ୍ଦ୍ର ମୋ କନସ୍ୟ ଘେନ
ନାସ୍ତି ନ କର କୃଷ୍ଣଭେଟି !

ନିର୍ମଳ ମୋତି-    ଦଶନ ବିମ୍ବାଧର
ଅହା ମତ୍ତ-କଳକଣ୍ଠ-ଧ୍ୱନି !
ନୀଳବସନ ରେ !
କଷ୍ଟେ ଯେବେ ଦୟା କଲୁ ମୋରେ ।
ନଖ-କରଚେ କଗଳ ପକା ଘଟେ ନ ଦଅ ବଇଷ କରତରେ । ୧୦ ।
ପ୍ରଭୁପଣ ଥାଉଁ    ଥାଉଁ ପର ହାତେ
ଦଣ୍ଡ ଦିଅଇବା ଅନୁଚିତ ।
ପୀନଉଦରା    ବାହୁପାଶେ ବନ୍ଧନ
କର ଲଦ କୁଚ-ପରବତ ।
ପ୍ରାଣବାନ୍ଧବ ହେ !
ପାଚଲେ ନେଯାନ୍ତୁ କୁଞ୍ଜ ମାର ।
ପଡିଅଛୁ ବନ୍ଧୁ ! ଚରଣେ ଶରଣ ଯାହା ଇଚ୍ଛା ପଛେ ତାହା କର । ୧୧ ।
ଫୁଲ୍ଲାରବିନ୍ଦ-ନ—    ଦ୍ୱିଜ ଗୃହ ଶୁଣି
ଫୁଲ୍ଲ ସରସିଜମୁଖୀ ବାଳା ।
ଫେଡ଼ ବଚନ    ନ କହ ନନ୍ଦ ଦୁହି
ଖେଳାଇଲା ନେହଅଙ୍କ ଡୋଳା ।
ଫଳ ଫଳିବାକୁ ।
କାମକଳ୍ପତରୁ ଲତିକାରେ ।
ଫଳିଲା ଫଳ କୃଷ୍ଣ ଭୋଗ ଅର୍ଥରେ ହରଷ ହୋଇଲା ମାନସରେ । ୧୨ ।
ବଢିଲା ବେନି    ଜନଙ୍କ ରତିରଙ୍ଗ
ବେଳକୁ ବେଳ ବିବିଧ ରଙ୍ଗେ ।
ବଡ଼ସୁନ୍ଦର    ଦିଶିଲା ବେନି ଅଙ୍ଗ
ନୀଳମଣି ଚନ୍ଦ୍ର ହେମ ଅଙ୍ଗେ ।
ବନମାଳୀ ଅଙ୍କ ।

ନବଜଳଧର କୂଳେ ଥାଇ
ବିଧୁମୁଖୀ ଚନ୍ଦ୍ର ବଦନ ବିକୂଳ ଝିଁଟି ଝିଁଟି ଝିଁଟି ଝିଁଟିହାଇ । ୧୩ ।

ଭାସନ୍ତି ନାନା ପ୍ରକାରେ ବନ୍ଧ ବାଣୀ
ଜଳଧର ଘୋଷ ପ୍ରାୟେ ମଣି ।
ହସି ହୋଇ ଘନ ରସ ବରଷନ୍ତେ
ବଢ଼େ ମହା ସୁଖ ତରଙ୍ଗିଣୀ ।
ଭାଙ୍ଗି ଜ୍ଞାନ ବନ୍ଧ ।
ଭାଙ୍ଗିଲା ବିବେକ ଧୈର୍ଯ୍ୟ ତଟ ।
ଭାଙ୍ଗିଗଲା ଲାଜ ତଟ ତରୁ ତହିଁ ଲୋଡ଼ିଲେ ପାଇବ ନାହିଁ ଭେଟ । ୧୪

ମହା ମଣ୍ଡଳୀ ମାଧବ ଉଛବମ
ବରଷା ହୋଇଲା ଯହୁଁ ଶେଷ ।
ମହା ହରଷରେ ରାଧା କୃଷ୍ଣ ବେନି
ଚନ୍ଦ୍ର କିରଣରେ ପରବେଶ ।
ମନ ମୋହିନୀକି ।
ମଦନ ମୋହନ କଲେ ବେଶ ।
ମନୋହର କଚ କବରୀ ବାନ୍ଧିଲେ ବେଢ଼ାଇ ବିବିଧ ସୁମନସ । ୧୫ ।

ଯତନ କରି ଅର୍ଦ୍ଧଚନ୍ଦ୍ର କପାଳେ
କସ୍ତୁରୀ ସିନ୍ଦୂର ଟିକା ଦେଲେ ।
ଜ୍ୟୋତିଧର ମୋତି— ବସଣୀ ନାସାରେ
କର୍ଣ୍ଣରେ କୁଣ୍ଡଳ ଶୋଭା କଲେ ।
ଜମ୍ବୁନଦମାଳୀ ।
କମନୀୟ କମ୍ବୁ କଣ୍ଠେ ଶଙ୍ଖି ।
ଝଲଝଲ କରେ ଚୂଡ଼ୀ ଝାଡ଼ି ଲଗାଇ ରମଣୀ ରଞ୍ଜନ ମନ ରଞ୍ଜି । ୧୬ ।

ରୁଚିର ଖଞ୍ଜନ     ନୟନେ ଅଞ୍ଜନ
ଚତୁଃସମ ଗୋଳ ଅଙ୍ଗେ ବୋଳି ।
ରଙ୍ଗ ଅଧରେ     ତାମ୍ବୂଳ ରାଗ ଦେଇ .
ଦର୍ପଣ ଧରିଲେ ବନମାଳୀ ।
ଲଗେ ହସି କହି ।
ବୋଇଲେ ମୋ ସେବା ଏହୁ ସିନା ।
ରଙ୍ଗିମା ନେତ୍ରେ ଭଙ୍ଗିମା କରି ଗୁହ୍ନି ମନ୍ଦ ମନ୍ଦ ହସେ ନନ୍ଦକାହ୍ନା ।୧୭।

ଲାବଣ୍ୟ—···     ଶ୍ରୀଅଙ୍ଗେ ବେଷ୍ଟାଇ
କର୍ପୂର ଚୁରଲ ଛୀନବାସ ।
ଲ···ଇ···ବାମ     ହୃଦକୁ ଲଗାଇ
ଅଲକ୍ଷ ଧରିଲେ ପୀତବାସ ।
"......
ସ୍ୱର୍ଣ୍ଣ ପ୍ରତିମା ପାଶେ କି ଅମୂଲ୍ୟ-ମର୍କତ ମଣି ପ୍ରଭା··· । ୧୮ ।

ବୋଲନ୍ତି ଶ୍ରୀହରି     ଶୁଣ ପ୍ରାଣେଶ୍ୱରୀ !
ବଡ଼ ଦୟା କରଥିବୁ ମୋତେ ।
ହିତ ହେଲି ଦାସ     ଜନଠାରେ ଦୋଷ
ନକରିବୁ ବନ୍ଧୁ ! କଦାଚିତେ ।
ବିଧୁ ବଦନାରେ ।
ବେଭାରେ ତୁ ମୋର ପ୍ରାଣଧନ ।
ବ୍ରଜ ସଙ୍ଗେ ଥିଲେ ବୃନ୍ଦାବନ ଗଲେ ତୋହଠାରେ ମୋହ ଥାଉ ମନ ॥

ସତତେ ତୁ ମୋର     ନୟନ ପ୍ରତିମା
ତୋତକୁ ମୋତେ ନଦଣ୍ଡେ ଆନ ।
ସଙ୍ଗ ଖଣ୍ଡିଲେ     ଅଙ୍ଗ ନ ବଞ୍ଚଇ
ଜଳ ଅଭାବରେ ଯେସନେ ମୀନ ।

ଶିଖି-ମଣ୍ଡନା ହେ !
ତୋ ଭାବ-ଗୁଣରେ ବନ୍ଧ ହୋଇ ।
ଶ୍ରୀକର ଛୁଇଁ କହୁଛି ସବୁ ଅଙ୍ଗେ ଚନ୍ଦ୍ରୀ ପ୍ରାୟେ ଝିନା ଭ୍ରମୁଥାଇ । ୩୦ ।
ସୁହାସି ! ସୁଶ୍ରୋଣି ! ସୁବେଣି ! ସୁମୁଖି !
ସୁଦନ୍ତ ! ସୁଧୀର ! ସୁକୁମାର !
ସୁଗଜ-ଗମନ ! ସୁଇନ୍ଦୁ-ବଦନ !
ସବୁରୂପେ ବନ୍ଧୁ ମୁଁ ତୋହରି ।
ସୁଖ ଦାୟିନୀରେ !
ସନ୍ତୋଷେ ମେଲାଣି ଦିଅ ମୋତେ ।
ସହରଷ ହୋଇ ରମଣୀରଞ୍ଜନ ! ବୋଲି ଅନୁସ୍ମୃତ ଥିବ ମୋତେ ॥
ସହଜେ ଶ୍ରୀମୁଖେ ଅଜ୍ଞା ଦେଲେ ଯେତେ
ତୁମ୍ଭେ ମହାପ୍ରଭୁ ବୋଲିକରି ।
ସହିଲେ ସୁମନା ପ୍ରାୟେ ପ୍ରୀତ ହୋଇ
ଅଶ୍ଳାଘନା କଲି ଭୋଗ୍ୟ କରି ।
ଶ୍ୟାମ ସୁନ୍ଦର ହେ !
ସବୁଦିନେ ଏହୁ ହୋଇଥିବ ।
ସବୁରୂପେ ଦାସୀ ହେଲେ ଦୋଷକାଳେ ଅପରାଧ କ୍ଷେମିବେ ନା ଯେଉଁବ ।

× × ×
× × ×



ଘନସୁନ୍ଦରଙ୍କୁ    ମନ ହର ଦେଲି,
ବନ-କୁସୁମ ତୋଳାରେ ଗୋ !
ଘଣ୍ଟିଘାଗୁଡ଼ିଅ,    ବାଙ୍କଚୂଳିଅଙ୍କୁ;
ହାର କରିଚି ଗଳାରେ ଗୋ ॥
ଘରୁ ହୋଇଚି ବାହାର ।
ଘେନି କୃଷ୍ଣ-ନାମାବଳୀ-ହାର ଗୋ । ୪ ।

ଉମା ଶଙ୍କରଙ୍କୁ    ସେବାରେ ମନାଇ,
ପାଇଚି ଏମନ୍ତ ଦୀକ୍ଷା ଗୋ !
ଉଦାସୀନୀ ହୋଇ,    କାଳ ବଞ୍ଚୁଥିବ
କୃଷ୍ଣ ନାମେ ମାଗି ଭିକ୍ଷା ଗୋ ॥
ଉଡ଼ୁ ପଛେ ଜନା-ବାନା ।
ଉଣା କଥାକୁ ନାହିଁ ଶୋଚନା ଗୋ । ୫ ।

ଚନ୍ଦନପାଟିଅ    କନ୍ଦର୍ପମୋହନ
ନାଚୁଥାନ୍ତୁ ମୋ ନୟନେ ଗୋ !
ଚିନ୍ତାମଣି ମୋର,    ଚିତ୍ତର ଭିତରେ;
ରହିଥାନ୍ତୁ ଅନୁକ୍ଷଣେ ଗୋ ।
ଚଉଦ-ଭୁବନ-ଭୂପ ।
ଚେଳାଞ୍ଚଳ-ନିଧି ମୋର ହେଲା ଗୋ । ୬ ।

ଛନ୍ଦାଚରଣଙ୍କୁ,    ଫନ୍ଦା ମୁଁ କରୁଚି
ବନାଇଣ କରମାଳ ଗୋ !
ଛଇଲ ନାଗର,    ଛଳ ନଟବର—
ମୂରଛ ମୋର ସଙ୍ଗାଳ ଗୋ ॥
ଛାଡ଼ିଚି ସକଳ ଆଶା ।
ଛନ୍ଦକାରୀଙ୍କି କରି ଭରସା ଗୋ । ୭ ।

# ପ୍ରୀତିଚିନ୍ତାମଣି ଚଉତିଶା

( ବାବାଜୀ ବୈଷ୍ଣବଚରଣ ଦାସ )

ଏହି ଗୀତଟି ଭକ୍ତ ଚରିତମାଳାରୁ 'ମଧୁଚକ୍ରରେ' ଅନ୍ତର୍ଭୁକ୍ତ କରିବାର ଉଦ୍ଦେଶ୍ୟ ଏହି ଯେ ଏ ପ୍ରକାର ଲେଖକ ଦେଶରୁ ପ୍ରାଚୀନ ରଚନା ଶ୍ରେଣୀର ଉତ୍କର୍ଷ ସାଧନା କେବେ କରାଯାଇ ଅବ୍ୟାହତ ରହିଅଛି । ମାନନୀୟ ବାବାଜୀ ମହୋଦୟ ଶ୍ରୀ-ଶ୍ରୀମୋଦ କବଳରେ ପଢ଼ିଥିଲେ ତାଙ୍କ କବିତାରେ ଏତିକି ଲେଖାର ଏତେ ସୌରଭତା କାହିଁ ଫୁଟିଥାନ୍ତା ? ବାବାଜୀ ମହାଶୟ କବିତା ବ ୫ ବ ଘଟର ପ୍ରଥମ ପାଦ ଯେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଠାରୁ ଗ୍ରହଣ କରିଅଛନ୍ତି ।

ଲୁଲାଉମାନଙ୍କୁ ଦୂର କର ସଖି !
କଳଙ୍କ ଲଗିଛି କୁଳେ ଗୋ ।
କୃଷ୍ଣ କଟପ— ପ୍ରେମ ପ୍ରୀତି ପସରା,
ବହୁଛି ମୁଁ କବେ ମୁଣ୍ଡେ ଗୋ ॥
କଥା ରହି ଥାଉ ବୋଲି ।
କଲା କାହ୍ନୁକୁ ସଙ୍ଗାଳ କଲି ଗୋ । ୧ ।

ଖଳ ଦୁର୍ଜନ, ଛଳ ଠାକୁରାଣୀଙ୍କ
ଗିରିକୁ ଶିର ଆଡ଼ିଛି ଗୋ ।
ଖେଦଖାଳ ନାଳ- ହୃଦ କେଦାରେ ମୁଁ
କାଟି କାଣି ତ ବୁଣିଚ ଗୋ ।
ଖଟିବାକୁ କୃଷ୍ଣପାଦେ ।
ଖଣ୍ଡ ଭଣ୍ଡ ତ ମୋତେ ନ ବାଧେ ଗୋ । ୨ ।

ଗୋଇଠା ମାର ପ୍ରତିଷ୍ଠାକୁ ଛାଡ଼ିଚ
ଶ୍ୟାମ ଅଇଁଠା ଲୋଭରେ ଗୋ ।
ଜ୍ଞାନ, କର୍ମ, କାମ, ଦେଇଛି ମୁଁ ଦାନ
ଶ୍ୟାମବନ୍ଧୁ-ପ୍ରୀତି-ଅର୍ଥେ ଗୋ ।
ଗଲେ ଜୀବ ଯିବ ଯେବା ।
ଗଣ୍ଠିଧନ ମୋ କାଳିଆ ସୁନା ଗୋ । ୩ ।

ଘନସୁନ୍ଦରଙ୍କୁ ମନ ହତ ଦେଇ,
ବନ-କୁସୁମ ତୋଳାରେ ଗୋ !
ଘଣ୍ଟିଘାଗୁଡ଼ିଆ, ବାଙ୍କଚୂଳିଆଙ୍କୁ ;
ହାର କଣ୍ଠ ଗଳାରେ ଗୋ ।।
ଘରୁ ହୋଇଛ ବାହାର ।
ଘେନ କୃଷ୍ଣ-ନାମାବଳୀ-ହାର ଗୋ । ୪ ।

ଉମା ଶଙ୍କରଙ୍କୁ ସେବାରେ ମନାଇ,
ପାଇଛ ଏମନ୍ତ ଦୀକ୍ଷା ଗୋ !
ଉଦାସୀନୀ ହୋଇ, କାଳ ବଞ୍ଚୁଥିବ
କୃଷ୍ଣ ନାମେ ମାଗି ଭିକ୍ଷା ଗୋ ।।
ଉଡ଼ୁ ପକ୍ଷେ ନନ୍ଦା-ବାନା ।
ଉଣା କଥାକୁ ନାହିଁ ଶୋଚନା ଗୋ । ୫ ।

ଚନ୍ଦନପାଟିଆ କନ୍ଦର୍ପମୋହନ
ନାଚୁଥାନ୍ତୁ ମୋ ନୟନେ ଗୋ !
ଚନ୍ଦ୍ରାମଣି ମୋର, ଚତୁର ଘଟରେ;
ରହୁଥାନ୍ତୁ ଅନୁକ୍ଷଣେ ଗୋ ।
ଚଉଦ-ଭୁବନ-ଭୂଷା ।
ଚେଲାଞ୍ଚଳ-ନିଧି ମୋର ହେଲା ଗୋ । ୬ ।

ଛନ୍ଦାଚରଣଙ୍କୁ, ଫନ୍ଦା ମୁଁ କରୁଛି
ବନାଇଣ କରମାଳ ଗୋ !
ଛଇଳ ନାଗର, ଛନ୍ଦ ନଟବର—
ମୂରଛ ମୋର ସମ୍ଭାଳ ଗୋ ।।
ଛଡ଼ିଛି ସକଳ ଆଶା ।
ଛନ୍ଦକାଙ୍କି କର ଭରସା ଗୋ । ୭ ।

ଜନ ଅପବାଦେ ଜଳାଞ୍ଜଳି ଦେଲି
ଜପିବାକୁ କୃଷ୍ଣ-ନାମ ଗୋ !
ଜଗତ ଯାକରେ ନିନ୍ଦା-ଢୋଲ ବାଜୁ
ସମସ୍ତେ ହୁଅନ୍ତୁ ବାମ ଗୋ ॥
ଜାଣିଥାଅ ମୋ ସଜନୀ !
ଜୀବ ଯିବ କୃଷ୍ଣ-ଗୁଣ ଗୁଣି ଗୋ । ୮ ।

ଝରୁ ଥାଉ ମୋର, ନୟନରୁ ନୀର;
ସେହି କୃଷ୍ଣକଥା ଭଲ ଗୋ !
ଝାଉଁ-ମରି ହୋଇ, ଗଳ ପଡୁଥିବ
ଧଳ କୃଷ୍ଣଜପମାଳ ଗୋ ॥
ଝରୁଥିବ କଳେବର ।
ଝାଡ଼-ବୁଲା ନ ଯାଉ ମୋ ମନୁ ଗୋ । ୯ ।

ଞସ୍ମୟ କରିତ, ନଜ ଦେହେ ମୋର,
ନାହିଁ କିଛି ଅଧିକାର ଗୋ !
ଞୀଳ ନଳିନ ଶ୍ରୀ— କରଯୁଗ-ପାଶେ
ରାଧା ବନ୍ଧା ନିରନ୍ତର ଗୋ ॥
ନ ରୁଚଇ ମୋତେ ଆନ ।
ନ ଦିଶଇ କେ ତାଙ୍କ ସମାନ ଗୋ । ୧୦ ।

ଟଳି ପଡ଼ୁ ଦେହ ସେ ଶ୍ୟାମ ବିଗ୍ରହ—
ସୁନ୍ଦରଙ୍କୁ କୋଳ କରି ଗୋ !
ଟହ ଟହ ମନ୍ଦ— ମଧୁର ହାସନ୍ତି,
ଦେଖୁଥିବ ନେତ୍ର ଭରି ଗୋ ॥
ଟେକ ଶ୍ରୀମୁଖମାଧୁରୀ ।
ଟାଣପଣ ମୋ ମୁରଲୀଧାରୀ ଗୋ । ୧୧ ।

ଠଣ ପଙ୍କଜ— ଚରଣ ଯୁଗେ ମନ—
ଧନକୁ ଦେଇଚି ବନ୍ଧା ଗୋ !
ଠାଣି ହିରଙ୍ଗିଆ, ସେ ନବରଙ୍ଗିଆ—
ଲାଗି ସଦେ ଏତେ ଧନ୍ଦା ଗୋ ॥
ଠାକୁର ମୋହର ସେହୁ ।
ଠିକେ ବୈଷ୍ଣବ ଦାସ କହଇ ଗୋ । ୧୨ ।

ଡର ଲାଜ ଘୃଣା ଫିଙ୍ଗିଚ ଦୂରକୁ
ଆଉ କାହାକୁ ମୋ ଭୟ ଗୋ !
ଡେଙ୍ଗୁରା ଏ ଗୋପେ, ବାଜୁଥାଉ ପଛେ,
ନେଇ କାଳିଆ-ଆଶ୍ରୟ ଗୋ ॥
ଡୋଳା-ପ୍ରତିମା ମୋ ସେହୁ ।
ଡାକ କହୁଚି ତୁଣ୍ଡ ବଜାଇ ଗୋ । ୧୩ ।

ଢଳ ଗଲେ ନୀର, ଯାଏ ଫିନା ବନ୍ଧ;
ସେ କି ଅସଇ ଲେଉଟି ଗୋ !
ଢଗଢମାଳରେ, ଅସହଣୀମାନେ,
ହସନ୍ତି ତାଳି ଦେଇଣ ଗୋ ॥
ଢିଙ୍ଗ ଶ୍ୱଶ୍ରୂଙ୍କ ଥୋଇ ।
ଢାଳିଚି ମୁଁ ମନ ତାଙ୍କ ତହିଁ ଗୋ । ୧୪ ।

ଅରୁଣ-କୁଞ୍ଜରେ ତରୁଣୀରଙ୍କାକୁ
କରୁଥିବ ଆଲିଙ୍ଗନ ଗୋ ।
ସରୁ ଅଞ୍ଜନିଆଁ, କରୁଣାନିଧି ମୋ
ତରୁଣିଆ ମୋହନ ଗୋ ॥
ଧରୁଚି କେତେ ବା ପାଣି ।
ଗରୁ ଅପବାଦକୁ ନ ଶୁଣି ଗୋ । ୧୫ ।

ତନ୍ତ୍ର ଦେଲେ ଦେବେ, ଯନ୍ତ୍ରକେ ଜାଣିବୁ;
ତନ୍ତ୍ରିଁକ ନାହିଁ ମୋ ଦୁଃଖ ଗୋ !
ତଗତମାଳିଆ, ତନୁ ଶ୍ୟାମଳିଆ;
ତଲେ କୋହ୍ନିବେ ବିମୁଖ ଗୋ ॥
ତରଲ କର ନୟନେ ।
ତାଙ୍କୁ ଦେଖିଥିବ ଅନୁକ୍ଷଣେ ଗୋ । ୧୬ ।

ଥିର ଥିର ତର ପତଣ୍ଡ ସ୍ଖଳତ
ବହୁରଙ୍ଗ ମେଳେ ଥାଇ ଗୋ ।
ଥୟରେ ଥାପିତ, ସେହୁ ମୂରତିକି,
ହୃଦ-ମନ୍ଦିରେ ପୂଜିଇ ଗୋ ॥
ଥିବାଯାଏ ପିଣ୍ଡେ ପ୍ରାଣ ।
ଥାଉ ମୋର ଶ୍ରୀନନ୍ଦନନ୍ଦନ ଗୋ । ୧୭ ।

ଦରଶିବା ଯାକ- ଅଧରାମୃତକୁ
ଦସ୍ୟାତ୍ରସାମନ୍ତ ମୋର ଗୋ !
ଦେବେ କେବେ ଯାଚି, ଦରଶନ କାଳେ,
ଦରହସିଆ ସୁନ୍ଦର ଗୋ ॥
ଦୁଃଖିନୀ-ଦୁଃଖପାସୋରା,
ଦୀନବନ୍ଧୁ ମୋର ଦନସରୀ ଗୋ । ୧୮ ।

ଧନ ମୋର ସେହୁ, ଜନ ମୋର ସେହୁ
ଧରା ମଧ୍ୟରେଷ୍ଟ ପରା ଗୋ !
ଧବଳୀ ଶ୍ୟାମଳୀ— ଧେନୁ ପଛୁଅ ମୋ
ଧୈର୍ଯ୍ୟ ବିବେକ ଦରା ଗୋ ॥
ଧୀର ଲଳିତ ମୂରତି !
ଧ୍ୟାନ ଦେବତା ମୋ ନୀଳ ଦାତା ଗୋ । ୧୯ ।

ନଈ ଗାଣ୍ଠ ନଗା, ସେ ହୃଦରଲଗା
ନବୀନ ନାଟୁଆମଣି ଗୋ ।
ନବନାଗରୀଙ୍କ ଚିତ୍ତ ବିନୋଦିଆ;
ନିଧୁବନ ଜଣାମଣି ଗୋ ॥
ନିକୁଞ୍ଜ କିଶୋର ବର ।
ନିତ୍ୟ ନୂତନ ରୂପ ମୋ ସାର ଗୋ । ୨୦ ।

ପଦ୍ମପାଦ ଧୂଳି ହେଉଥିବ ବୋଲି
ପାପ-ଅଙ୍ଗରେ ମୋହର ଗୋ ।
ପରମ ପଦାର୍ଥ ସେ ଚିନା ସଜନ !
ପାଇବ ତାହା କି କହ ଗୋ ॥
ପ୍ରୀତି-ଚନ୍ତାମଣିଙ୍କର ।
ପ୍ରିୟା ପଦକୁ ମୁଁ ଅପ୍ସନର ଗୋ । ୨୧ ।

ଫରଣ୍ଟ ହୃଦରୁ ଫିଙ୍ଗି ଦେଉଥିବା;
ଛଡ଼ା ବାସ ଫୁଲହାର ଗୋ ।
ଫୁଲଣା ମନେ ତା, ଯତନେ ଗୋଠାଇ,
ଗଳାରେ ଖଞ୍ଜିବି ମୋର ଗୋ ॥
ଫୁଲ ଉଠିବ ମୋ ଅଙ୍ଗ ।
ଫୁଟା କଣ୍ଟ-ଶିଷ୍ଟ ପ୍ରେମେ ମାତ୍ର ଗୋ । ୨୨ ।

ବକୁଳ ମାଳତୀ, ଫୁଲେ ମାଳ ଗୁନ୍ଥି
ବଧୂ ଚନ୍ଦନେ ଚିତ୍ରାଇ ଗୋ ।
ବନ୍ଧୁଙ୍କ ଗଳାରେ ଉପହାର ଦେବି;
ହବାକେ ମୁଁ ସିଦ୍ଧହୋଇ ଗୋ ॥
ବୋଲି କରନ୍ତ ଭରସା ।
ବିଶ୍ୱମୋହନ ଫେଡ଼ିବେ ଦଶା ଗୋ । ୨୩ ।

ନଗାର କେ ହେଉ— ପଛେ ଏଥିପାଇଁ,
ଭାବନା ନାହିଁ ମୋ ଢଲେ ଗୋ ।
ଭୂଲି ତ ଯାଇଛ, ଭାବ ବିନୋଦଙ୍କୁ;
ପଟେ ହୋଇବେ କି ଉଲ୍ଲେ ଗୋ ॥
ଭାଲଛଳକ ସେ ମୋର ।
ଭଣେ ବଇଷ୍ଣବ ଦାସ ଛାର ଗୋ । ୨୪ ।

ମନର ବେଦନା ମନେ କଲି ଚୂନା,
ମରକତ-କାନ୍ତି ଲାଗି ଗୋ ।
ମଧୁର ମୁରଲୀ- ମୋହନୀ ମନ୍ତ୍ରେ
ମୁଁ ତ ହେଲି ଅନୁରାଗୀ ଗୋ ॥
ମନେ ରଖିଥା ମିତଣି !
ମଥାମଣି ମୋର ବେଣୁପାଣି । ୨୫ ।

ଯଶୋଦା ରାଣୀଙ୍କ, ନୟନ ପିତୁଳି
ଯମୁନା-କୂଳଅ ଶ୍ୟାମେ ଗୋ ।
ଯାଉ ହୋଇ ନିକେ, ପ୍ରାଣ ସମର୍ପିତ,
କୃଷ୍ଣ-କଳଙ୍କିନୀ ନାମେ ଗୋ ॥
ଯଉ-ମଣ୍ଡ-ଭୂଲି ପ୍ରୀତି ।
ଯିବ କି ମୋ ମନୁ ଭ୍ରିୟୁ ଦୂର ଗୋ । ୨୬ ।

ରଙ୍ଗ ଅଧରଙ୍କ ଅଙ୍ଗ-ସଙ୍ଗ ପାଇଁ
ରଙ୍କ ମୋ ଅବୋଧ ଚିତ୍ତ ଗୋ ।
ରସାଣ କାଳଅ, ସୁନା ଫୁଲାଗର;
ମୋହର ସର୍ବସ୍ୱ ବିତ୍ତ ଗୋ ॥
ରଖାନାହିଁ ତାଙ୍କ ବନୁ ।
ରସିତ ମୁଁ ରବପୂଜା ବନୁ ଗୋ । ୨୭ ।

ଲମ୍ବା ଧମ୍ମିଲ୍ଲ ଏହ୍ନା, ଲଘୁ ଚାନ୍ଦାଙ୍କୁ;
ଲୋକାଗ୍ରର ବର ଭାଗ ଗୋ ।
ଲେଖି ଚକ୍ର-ପଟେ, ରଖିଛି ନିକଟେ
ଲୋଭେ ବଳାଇ ସରାଗ ଗୋ ॥
ଲକ୍ଷଣବନ୍ତ ପୁରୁଷ ।
ଲୁଟି କରିଛନ୍ତି ମୋ ମାନସ ଗୋ । ୨୮ ।

ବରଜ ବନାରେ, ଦଜାର ମୁଖରେ;
ବାଜୁ ଅଙ୍ଗରି ବାଜଣା ଗୋ ।
ବନମାଳଥ ମୋ, ଧନମାଳ ବୋଲ୍ଲ,
ସମସ୍ତଙ୍କୁ ଦେଇ ଜଣା ଗୋ ॥
ବସ୍ତୁ ଅପନନ୍ଦା ଦାଣ୍ଡ ।
ବନ୍ଧୁ ଜୀବନର ନନ୍ଦଶୁଣ୍ଠ ଗୋ । ୨୯ ।

ଶରଣ ମୁଁ ତାଙ୍କ, ଚରଣ ତଳରେ;
ବାରଣ କାର ନ ମାନି ଗୋ ।
ଶୁଭ ଅଶୁଭ ତ, କିଛି ନ ଗଣଇଁ;
ଭଲ ମନ୍ଦ ଲାଭ ହାନି ଗୋ ॥
ଶ୍ରୀମୁଖ ମାଧୁରୀ ଦେଖି ।
ଶତ୍ରୁ ଗଞ୍ଜଣା: ନ ବାଧେ ସଖି ଗୋ । ୩୦ ।

ଷଣ୍ଡ ମୁଣ୍ଡ-ମୋଡ଼ା କାଳୀୟ ଘନ୍ତୁଡ଼ା;
ଷଟ୍ପଦ ମୁଁ ପଦ୍ମଜା ଗୋ ।
ଷୋଳ ଏକ ଊଣା- ବୟସ ନବୀନ—
ଶ୍ରୀକିଶୋର ଚୂଡ଼ାମଣି ଜେ ।
ଷୋଳକଳା ଶତ ଧାମ ।
ଷୋଡ଼ଶ ଯୋଗରେ ପୂରୁ ନାମ ଗୋ । ୩୧ ।

ସଂସାରର ସାର— ଶୋଭାକୁ ଗୋଟିଏ,
ଜଗ ନିର୍ମିଣେଛି ବିହି ଗୋ !
ସୁରସିକ ବର, ସୁବଳ ସଙ୍ଗିଆ,
ସମସର କେହୁ ନାହିଁ ଗୋ ॥
ସେତ ସୁଖର ସଦନ ।
ସବୁ ଗୋପୀଙ୍କ ମୋଦବର୍ଦ୍ଧନ ଗୋ ।୩୨।

ହଳୀପ୍ରିୟ ମୂଳ— ବନ୍ଧାସ୍ତି ମୋ ମୂଳ,
ହରତ-ବସନ ହର ଗୋ !
ହେଜ ହେଜ ନନ୍ଦ, ହିରଙ୍ଗ ମୁରଡ଼,
ହେବ ଏ କାଙ୍କାଳି ପାର ଗୋ ॥
ହେ ସଖି ! କହୁଲି ସତ୍ୟ ।
ହସେ ନେଇ ହେଉ ଅଶ୍ରୁପାତ ଗୋ ।୩୩।

କ୍ଷଣେ ତ ଅନ୍ତର, ହେଲେ ବଂଶୀଧର,
କ୍ଷୋଭସିନ୍ଧୁ ଉଚ୍ଛୁଳଇ ଗୋ !
କ୍ଷମାନିଧାନ ଗୋକୁଳ-କଳାକର
କ୍ଷୀର, ମୁଁ ନୀର ଅଟଇ ଗୋ ॥
କ୍ଷୀଣ ହେଲି ତାଙ୍କୁ ଧ୍ୟାୟି ।
କ୍ଷେମେ ବୈଷ୍ଣବ ଦାସ କହଇ ଗୋ ।୩୪।



# ରାଧାକୃଷ୍ଣ ମିଳନ ଚଉତିଶା

( ସୁଦର୍ଶନ ପଟ୍ଟନାୟକ )

ସୁଦର୍ଶନ ପଟ୍ଟନାୟକଙ୍କର ଅନ୍ୟ କୌଣସି କବିତା ମିଳନାହିଁ; କିନ୍ତୁ କେବଳ ଏହି ରାଧାକୃଷ୍ଣ ମିଳନ ଚଉତିଶା ଦ୍ୱାରା ତାଙ୍କ ନାମ ଓଡ଼ିଆ ସାହିତ୍ୟରେ ଅମର ହୋଇ ରହିବ । ଯେଉଁ ସବୁ ସ୍ତୁତି ଗୀତିକା ଓଡ଼ିଆ ନର ନାରୀଙ୍କ ନିତ୍ୟ କଣ୍ଠହାର ପଟ୍ଟନାୟକଙ୍କ ଚଉତିଶା ତନ୍ମଧ୍ୟରୁ ଅନ୍ୟତମ ।

କହେ ରାଧା ବିମ୍ବାଧରା । କରେ କୁଞ୍ଜ-ଦ୍ୱାର ଧରି କୃଶୋଦରୀ ଗୋ ।
ଆଣ ଆଣ ଯା କୁଞ୍ଜବିହାରୀ
ସଜନି ଗୋ । ୧ ।

ଖଣେ ବିଲମ୍ବ ନ କର । ଖାଇବ ଗରଳ ସତ୍ୟ ମୋହର ଗୋ ।
ବେଗେ ଆଣ ଯା ନନ୍ଦକୁମର
ସଜନି ଗୋ । ୨ ।

ଗଳାମାଳ ମୋର ନିଅ । ଗିରିବରଧାରୀ-ଗଳାରେ ଦିଅ ଗୋ ।
ଶୁଭେ ପୂରିବ ଭଲେ କରିଅ
ସଜନି ଗୋ । ୩ ।

ଘଡ଼ିଏ ନ ରହି ଚଳ । ଘନଶ୍ୟାମଙ୍କୁ ହେ କହିବ ମୋର ଗୋ ।
ତାଙ୍କୁ କୋଟି କୋଟି ନମସ୍କାର
ସଜନି ଗୋ । ୪ ।

ଙଣା ମୋ ନାହିଁ କାହିଁରେ । ଆସିବାକୁ ପଥ ଚାହୁଁଛି ଧୀରେ ଗୋ ।
ଦଶା ହେଲେ ହେବ ଜଗତରେ
ସଜନି ଗୋ । ୫ ।

ଚଉଦକୁ ମୁଁ ଦେଲି ବାଡ଼ । ଗୃହର କାଉ ରଖନ୍ତୁ ଏଣିକି ଗୋ ।
ଯାଉଁ ଛନ୍ଦ ଯା ବେଣୁପାଣିଙ୍କି
ସଜନି ଗୋ । ୬ ।

ଛଇଳା-ରମଣୀ-ବର । ଛଡ଼ିଲେ ଛଡ଼ନ୍ତୁ ମୁଁ ତ ତାଙ୍କର ଗୋ ।
ନଷ୍ଟେ ପ୍ରାଣ ଗଲାଣି ମୋହର
ସଜନି ଗୋ । ୭ ।

ଜାଣି ମୁଁ ନ ଥିଲି ତାଙ୍କୁ । ଜଗନ୍ମୋହନଙ୍କ ମନ୍ତ୍ରଅଙ୍କୁ ଗୋ ।
ବହି ବହୁଛି ପ୍ରାଣ ନେବାକୁ
ସଜନି ଗୋ । ୮ ।

ଝୁରି ଝୁରି କ୍ଷୀଣ ତନୁ । ଝିମିଟେ ତା କଥା ନ ଯାଏ ମନୁ ଗୋ ।
ଶୁଣିବାରୁ ତା ମୋହନ ବେଣୁ
ସଜନି ଗୋ । ୯ ।

ନୟନ ଲଗ ଲଗୁଛି । ନ ରହିବ ଜୀବ ତାଙ୍କୁ ନ ଦେଖି ଗୋ ।
ମୁଁ ତ ନ ପାରେ ତାଙ୍କୁ ଭୁଲୁଛି
ସଜନି ଗୋ । ୦ ।

ଟାଣି ଭାଙ୍ଗିଲା ମଦନ । ଟଳି ପଡ଼ିବାକୁ ଅଛି ଜୀବନ ଗୋ ।
ଜଳ ବାହାରେ ବଞ୍ଚେ କି ମୀନ
ସଜନି ଗୋ । ୧୧ ।

ଠାକୁର ନନ୍ଦଦୁଲାଳ । ଠାଠିକେ ସୁନ୍ଦର ମୟୂର-ଚୂଳ ଗୋ ।
ଦେଖି ଶଚୀ ହେବେ ନଷ୍ଟେ ଭୋଳ
ସଜନି ଗୋ । ୧୨ ।

ଡୋଳେ ମୁଁ ଦେଖିଲି ଦିନ । ଡଙ୍ଗର ନାସିକା ସେ ଫୁଲଧନୁ ଗୋ ।
ଖଣ୍ଡ ଖଣ୍ଡ କଲା ଦିନୁ ଦିନୁ
ସଜନି ଗୋ । ୧୩ ।

ଢ଼ାଳେ ମୁଁ ହେଲି ନିରାଶା । ଢାଳେ ବନ୍ଧୁ କଲେ ଉଣାଉଦଶା ଗୋ ।
ତାହା ବିନୁ ନାହିଁ ମୋ ଭରସା
ସଜନି ଗୋ । ୧୪ ।

ଅପବାଦ ହେଲେ ହେଉ । ଅଲ୍ୟଲ କୃଷ୍ଣ ସଙ୍ଗେ ବନ ଯାଉ ଗୋ ।
କଥା ଯୁଗେ ଯୁଗେ ରହିଥାଉ
ସଜନି ଗୋ । ୧୫ ।

ତାହାଙ୍କୁ କହିବୁ ବୃତ୍ତ ! ତ୍ରୈଲୋକ୍ୟନାଥ ସେ କି ନ ଜାଣନ୍ତି ଗୋ ।
ନାରିକେଳ ଫଳ ପରି ବୃତ୍ତି
ସଜନି ଗୋ । ୧୬ ।

ଥୟ ହେଉ ନାହିଁ ମନ । ଥରେ ଦେଖ ଶୁଣି ତା ବଂଶୀସ୍ୱନ ଗୋ ।
ସେ କି ଜାଣେ ତାହିଁରି ମୋହନ
ସଜନି ଗୋ । ୧୭ ।

ଦିନେ ସେ ଯମୁନାକୂଳେ । ଦୃଢଭୁଜ ମୋର ଧଇଲେ ବଳେ ଗୋ
ମୋର ଅଧରରେ କର ଦେଲେ
ସଜନି ଗୋ । ୧୮ ।

ଧରି କର ଫିଙ୍ଗି ଦେଲି । ଧର୍ମ ନ ସହିବ ବୋଲି ବୋଇଲି ଗୋ ।
ତାଙ୍କୁ ଧିକ୍କାର ଯେତେ ମୁଁ କଲି
ସଜନି ଗୋ । ୧୯ ।

ନନ୍ଦ ନରପଣ୍ଡ କର୍ଣ୍ଣି । ଗୋଚର ହୋଇଲେ କି ତୁମ୍ଭ ଠାଣ ହେ ।
ଶୁଣି ହୋଇଲେ ଯେତେ କାରୁଣ୍ୟ
ସଜନି ଗୋ । ୨୦ ।

ପଡ଼ିଲେ ମୋ ପାଦତଳେ । ପାଦଧୂଳି ନେଇ ବୋଳିଲେ ଶିରେ ଗୋ
ଯେତେ ବିନୟ ହୋଇ କହିଲେ
ସଜନି ଗୋ । ୨୧ ।

ଫାନ୍ଦ ଭଣ୍ଡୁଳ ତାହାଙ୍କୁ । ଫଳ ଲୋଡ଼ୁଛୁ ତ ଲୋଧବୃକ୍ଷକୁ ହେ ।
ଅନ୍ନ କହିବ ତୁମ୍ଭ ମାତାଙ୍କୁ
ସଜନି ଗୋ । ୨୨ ।

ବୋଲେ ଶୁଣ ସହଚରୀ । ବୋଇଲା ବୋଲ ନ କଲୁ କିଶୋରି ଗୋ
ଏବେ କିପାଁ ମରୁ ଝୁରି ଝୁରି
ସଜନି ଗୋ । ୨୩ ।

ଭାବବିନୋଦଥା ହରି । ଭକତଙ୍କ ସଙ୍ଗେ ନିତ୍ୟ ବିହାରୀ ଗୋ ।
ଭାବ ନ ପାବନ୍ତି ବ୍ରହ୍ମଋଷି
ସଜନି ଗୋ । ୨୪ ।

ମନରେ ଭୋର ଶଙ୍କର । ମାଇଲେ ଗୋପରେ ଯେତେ ଅସୁର ଗୋ ।
ବ୍ରହ୍ମା ଇନ୍ଦ୍ର ଗର୍ବ କଲେ ଚୂର
ସଜନି ଗୋ । ୨୫ ।

ଜୀବ ରଖ ଦେଇ ତାଙ୍କୁ । ଯାଅ ଯାଅ ସଖି ! କୁଞ୍ଜବନକୁ ଗୋ ।
ବର ଆଣ ଯା ପ୍ରାଣଧନକୁ
ସଜନି ଗୋ । ୨୬ ।

ରାଧାର ଏ ବାଣୀ ଶୁଣି । ରସରେ ଭାଷନ୍ତି ଦୂତୀ କାମିନୀ ଗୋ ।
ବେଗ ହୁଅ ଯା ରମଣୀମଣି !
ମଜନି ଗୋ । ୨୭ ।

ଲାବଣ୍ୟନିଧିକି ନେଇ । ନିକୁଞ୍ଜେ ଚଳିଲେ ଦୂତିକା ସହି ଗୋ ।
ଲକ୍ଷ୍ମୀପତିଙ୍କି ଭେଟିଲେ ଯାଇ
ସଜନି ଗୋ । ୨୮ ।

ବାଳା ଗଳାମାଳ ନେଇ । ବନମାଳୀ କଣ୍ଠେ ଦୂତୀ ଲମ୍ବାଇ ଯେ ।
ରାଧା କହୁଛି ଜୁହାର ହୋଇ
ନାଗର ହେ । ୨୯ ।

ସହୃଦେ ବଚନେ ଭଣିବ । ପରୁଦୋଷ ତାର କ୍ଷମା କରିବ ହେ ।
ସେ ତ ନ ଜାଣେ କପଟ କହିବ
ନାଗର ହେ । ୩୦ ।

ଶୁଣିଣ ଦୂତୀ ଭାରତୀ । ହେନ୍ଦେ ବଚନେ କଲେ ସେ ଲକ୍ଷ୍ମୀପତି ଯେ ।
ରାଧାକୃଷ୍ଣଙ୍କ ଭେଟାଇ ଦୂତୀ
ସୁଜନେ ହେ । ୩୧ ।

ସରସ ହୃଦୟ ହୋଇ । ହରଷେ ରାଧାଙ୍କୁ କୋଳେ ବସାଇ ଯେ ।
ରାଧାକୃଷ୍ଣଙ୍କ ମିଳନ ହୋଇ
ସୁଜନେ ହେ । ୩୨ ।

ହରଣୀନେହୀଙ୍କ ଧରି । ହରଷେ ଚୁମ୍ବନ ଦେଲେ ମୁରାରି ଯେ ।
ନାନା ରସେ ପାହିଲା ଶର୍ବରୀ
ସୁଜନେ ହେ । ୩୩ ।

ଛାଡ଼ିଲେ ରାଧା ପଲଙ୍କ । ଛାର ସୁଦର୍ଶନ ପଟ୍ଟନାୟକ ହେ ।
ହାତଗଲା ସେ ରସଦାୟକ
ସୁଜନେ ହେ । ୩୪ ।



କଟକ ପ୍ରାଚୀପ୍ରେସରେ ଶ୍ରୀ ବହ୍ନଦଚରଣ ପଟ୍ଟନାୟକ ବି.ଏ.ଙ୍କ ଦ୍ୱାରା ମୁଦ୍ରିତ

# ଚଉତିଶା ଚନ୍ଦ୍ରିକା

## ବିଟାଉ ଚଉତିଶା

୧—ଁକନକଶମ୍ଭୁରୁଚ—ସୁନାର ଶିବଲିଙ୍ଗ ପର ସୁମନୋହର ସ୍ତନ ୨—ଝିଟକହାସୀ—ହସିଲାବେଳେ ଯାହାର ଦାନ୍ତ ସବୁ ମୋତି ପରି ଝିଟି ଝିଟି ଦିଶେ । ଟେକ—ବଡ଼ । ଠେକେ—ନଷ୍ଟେ । ୩—ଢାଳେ-ନଷ୍ଟେ । ଜଳଧର—ମେଘ । ମାନସର—ମାନସ ସରୋବର । ମଧୁକର—ଭ୍ରମର । ଣୃଣୁ—ବିନମ୍ର ବଚନ । ୪—ଧନ—ରେ ସଙ୍ଖାଳି ! ତୁ ଧନ ଅର୍ଥାତ୍ ସମ୍ପଦ ଅଟୁ, ମୁଁ ନିଘଖାଳିଆ ଲୋକ ଥିବାରୁ ତୋ ଉପରେ ମୋର ବଡ଼ ଲୋଭ । କେହ୍ନୁ—କପଟ । ଫୁଲ୍ଲସାରସାକ୍ଷି—ପ୍ରଫୁଲ୍ଲ ପଦ୍ମପରି ଆଖି ଯାହାର ସେ । ଧେନ—ମନୋରଥ । ୫ । ବର୍ତ୍ତୁଳ ଉରଜେ—ଗୋଲାକିଆ ସ୍ତନଉପରେ । ୬ । ବିବେକୀ ସାର—ବିବେକିବର୍ଗଙ୍କ ମଧ୍ୟରେ ଶ୍ରେଷ୍ଠ । ଯେମେ—ସର୍ବ ଶୁଭରେ ।

---

## କିଶୋରୀ ଚଉତିଶା

୧—କମଳନେତ୍ର—ପଦ୍ମ-ନୟନ ଶ୍ରୀକୃଷ୍ଣ । କୂଳନେ—କୂଳରେ ୪—ଯେନାଯେନ କରି—ସ୍ନେହରେ । ଦାନ୍ତ୍ରଅ-ବାଣ ବନ୍ଧାହୋଇଥିବା । ନିବାରି—ବାରଣ କରି । ୬—ଛଦ୍ମ କହୁନାହିଁ—କପଟ କରି କହୁନାହିଁ କେହ୍ନୁ—କପଟ । ୯—ଝଗଡ଼ା ହୋଇ—ତଳ ହୋଇ । ଅସର—

ଅବସର, ତଭ । ତନୁ ବସ୍ତ୍ର—ଦେହରୂପ ଲତା । ୧୧—ଝାଳଦେଲ —ଛାଡ଼ଦେଲ । କରଜ—ନଖ । ଜରଠ—ବୃଦ୍ଧ । ୧୨—ଠଡ଼ୁଘବେ —ବୁଡ଼ିବେ । ୧୪-ଭଗ—ବଘାର କାଖ । ଦେହୁ-ଦେହ । ୧୯— ଦୂଷଣ-ନିନ୍ଦା । ୨୨—ଫୁରୁଣା—ଅନଳ ।

---

## ସଙ୍ଗିନୀ ଚଉତିଶା

୧—ରସନାଥ—ରସବନ୍ତ, ରସିକ । କେହୁ—ଉପର । ୨—ଝଣ୍ଟଣି ଦାସ—ସେବାଇତ ଲୋକ । ତମ୍ଭନ ଧନ ବର୍ଜିନ—ତମ୍ଭନ ବା ବୋଲ ରୂପକ ଦରମା । ଖର ଖରକେ—କ୍ଷଣ କ୍ଷଣକେ । ୩—ଗୁଣି ହୋଉଥାଇ —ଭଲ ଦେଉଥାଏ । ଗୁଆଁର—ମୂର୍ଖ । ୪—ଘୁଟିତ—ଘୁମାଇଲା ପରି ଜଣା । ଘୋଣା—ନାକପୁଡ଼ା । ରହୁଥାଉ—ଶୋଇଥାଉ । ଦେଖିଲେ— —ଚହ୍ନାକଲେ । ପଢ଼ଏ ନରହୁ - - - -କଠିନ—ହୃଦୟ ଫାଟି ଯାନ୍ତାଣି, କଳ୍ପ ତୋର କଠିନ ସ୍ତନ ବାଢ଼ି ବାଢ଼ି ତାହା କଠିନ ହୋଇ ଯାଉଥିବାରୁ ଫାଟୁ ନାହିଁ । ୬—ବ୍ୟାଜେ—କପଟରେ, ମିଛରେ । ୮—ଜୁଆରଙ୍କ—ଜୁଆ ଖେଳାଳ ହାରିଲେ କଣ ଜିଣିଲେ କଣ ଖେଳ ଛାଡ଼ି ଯାଇପାରେ ନାହିଁ । ୧୦—ନର—ଲୋକେ । ୧୧-ଠାବରେ—ଅଟ୍ଟାରେ ପ୍ରବଳ କହୁନାହୁଁ—ସ୍ପଷ୍ଟାଙ୍ଗରେ ହୋଇ କହୁନାହୁଁ । ଦାସବତ୍ସଳ—ଶ୍ରୀକର ଲୋକ ପ୍ରତି ଦୟାଳୁ । ଅଙ୍କଧରେ ପରଶର—ମହାଦେବଙ୍କ ପର ଅର୍ଥାତ୍ ଶତ୍ରୁ ଯେ କାମ ତାର ଶର । ୧୨—ହୃଷ୍ଟା—ଛାତି । ୧୩—କରଜ-ମୂଳ—ନଖମୂଳ । ଡମ୍ବରୁଧର—ମହାଦେବ । ଭୁରୁ ସ୍ଫୁରସ୍ତ—ଭୂଲଚାନଶୁ । ୧୪ । ଉମକର—ଗେଲରେ । ୧୫ । ବାସରେ—ଘରରେ । ରସନା—ଜିଭ । ଦଶନପନ୍ତି—ଦାନ୍ତ । ୧୭ । ଡାହିଲୁ—ବାଡ଼େଇଲୁ । ଖେଦ—ଦୁଃଖ । ୧୮ । ଦୁଇଜର ବାସ କଲୁ—ଦୁଇ

ହାତରୁ ଲୁଗାକର ଘୋଡ଼ାଇ ପକାଇଲୁ । ୧୯ । ଉତର—ସ୍ଥିର । ୨୧ । ପକାଇଲୁ କାଟି ହାର—ନିଜର ଐକାନ୍ତିକ ପ୍ରେମର ପ୍ରମାଣ ରୂପେ ୨୪ । ଭୂଷଣ—ଅଲଙ୍କାର । ୨୭ । ଗ୍ରହୀଶ—ଚନ୍ଦ୍ର । ୨୯ । ବିପରୀତ—ଉଲଟ ଗତି । ୩୩ । ସ୍ମର—କନ୍ଦର୍ପ ।

## ସୀତା ବିଚ୍ଛେଦ ଚଉତିଶା

୪ । ଘଣ୍ଟସଙ୍ଘ ଉରଜା—ଲଗାଲଗି ହୋଇ ସୁନ୍ଦର ସ୍ତନ ଥିବା ସ୍ତ୍ରୀ । କୁଳିଶ—ବଜ୍ର । ୫ । ନୀଳକଣ୍ଠ—ମହାଦେବ । ୬ । କୁନ୍ତଳକେଶୀ—କୁଞ୍ଚିତ କୁନ୍ତଳା । ୭ । ଜାନୁମଣ୍ଡନା—ଯେ ଯାନୁଫଳ ମଣ୍ଡୁଥିବ । ଛନାଇ—ଚଣ୍ଡାଇ । ୮ । ଜଇଜମାଳା—ଫୁଲହାର । ଜାତିପଦ୍ମିନୀ—ପଦ୍ମିନୀ ଜାତୀୟା ସ୍ତ୍ରୀ । ୧୦ । ଶୋଭା—ସୁନ୍ଦର । ୧୩ । ଡକା—ବିପଦ ପକାଇଲା । ୧୪ ଠମ—ଅଷ୍ଟା ।

## କମଳଦଳ ଚଉତିଶା

୨ । ମଯୂଣ—ମଦନ, କନ୍ଦର୍ପ । ୬ । ମଘବା—ଇନ୍ଦ୍ର । ଅଳକା—ଚନ୍ଦ୍ରଚନ୍ଦ୍ରଥ ବାଳ । ୭ । କ୍ଷୀରୋଦ୍ର ସୁତାପତି ସୁତ—କନ୍ଦର୍ପ । ଛନ୍ଦନ—ସ୍ୱଚ୍ଛନ୍ଦ । ୧୦ । ତନୁ—କ୍ଷୀଣ । ୧୬ । ତପନ ସୁତ—ଯମ । ୧୭ । ସଧ—ଅକାଙ୍କ୍ଷା ୨୨ । ଫଣୀ କୁଣ୍ଡଳ ରିପୁ—ମହାଦେବଙ୍କ ଶତ୍ରୁ କନ୍ଦର୍ପ ୨୭ । ଯାବକ—ଅଳତା । ୨୮ । କୋନ୍ତ—କୁନ୍ତ । ୨୯ । ଅଶନପାନ—ଖିଆପିଆ । ୩୩ । ଶକ୍ର—ଇନ୍ଦ୍ର ।

## ସାରଙ୍ଗଦୂତ ଚଉତିଶା

୧ । ସାରଙ୍ଗ—ହେ ହଂସ (ସାରଙ୍ଗ ପୃଥିବୀ) ତହିଁର ସାରଙ୍ଗ (ସିଂହ) ତୁଲ୍ୟ ଯେ ସାରଙ୍ଗ (ପଦ୍ମ) ନୟନ ଶ୍ରୀକୃଷ୍ଣ ତାଙ୍କୁ କହିବ ।

ଲୁସମକାଣ୍ଡ ଅର୍ଥାତ୍ କନ୍ଦର୍ପ, ତାର କାଣ୍ଡ ଅର୍ଥାତ୍ ଶର, ଶରର କାଣ୍ଡ ଅର୍ଥାତ୍ ଖଣ୍ଡ, ତାର ଦାଣ୍ଡରେ ଅର୍ଥାତ୍ ପଥରେ ଅମ୍ଭଙ୍କୁ କାହିଁକି ଦେଲେ, ପକାଇଲେ ?

ହର ହର ହରଙ୍କି ଅର୍ଥାତ୍ ବ୍ରହ୍ମା ବିଷ୍ଣୁ ମହେଶ୍ୱର ଏହି ତିନି ଦେବତାଙ୍କ ସମବାୟ ଶ୍ରୀକୃଷ୍ଣଙ୍କୁ ପଚାରିବ ।

୨ । ଖେଦ ଅକୂପାର—ଦୁଃଖ ସାଗର ପାରିନ୍ଦ୍ରମଧ୍ୟା—କ୍ଷୀଣକଟୀ । ସାଇଁ—ସ୍ୱାମୀ । ଅଧରରୁ ଅମୃତ ଖୁଆଇ ଅମଙ୍କୁ ଅମୃତ ଅର୍ଥାତ୍ ଅମର କରଯାଇଥିବାଟାହିଁ ତାଙ୍କର ମହା ଅପରାଧ ।

୩ । ଗୋପର ଜନ—ଗୋପର ସ୍ତ୍ରୀ, ଗୋପାଙ୍ଗନା । ହବାକରବକ୍ରପାଦ--ପଦ୍ମପାଦ । ଗୋକୁଲ ଯେ ଗୋପ, ତାର ପାଳ ଅର୍ଥାତ୍ ପାଳକ । ଗୋ ଅର୍ଥ ତାରକା ତାରକା କୁଳର ପାଳ ବା ପାଳକ ଯେ ଆକାଶ ବା ସ୍ୱର୍ଗ ତାର ପାଳ ବା ପାଳକ ନରେନ୍ଦ୍ର—ରାଜା ଅର୍ଥାତ୍ ଇନ୍ଦ୍ର । ଅମ୍ଭେମାନେ ସେହି ଗୋପପାଳକ ଇନ୍ଦ୍ରଙ୍କପଦକୁ ଭୁଞ୍ଜକଲୁ । ସୁମନା--ଫୁଲ ସୁମନା ଅର୍ଥାତ୍ ପ୍ରସନ୍ନମନା । ସୁମନା—ସ୍ତ୍ରୀ । ସୁମନା-ମଣ୍ଡନା —ଫୁଲରେ ମଣ୍ଡିହୋଇଥିବା ।

୪ । ଘନ ଘନ—ଭୁହାକୁଭୁହା । ଘନ —ନିବଡ଼, କଠନ ।

୫ । ନନ୍ଦନାନନ—ନନ୍ଦନର ପ୍ରୀତିକାରୀ, ନୀରଜନୟନ— ପଦ୍ମନୟନ ଶ୍ରୀକୃଷ୍ଣ । ନନ୍ଦନ ନନ୍ଦନ—ଧର୍ଷିର ପୁଅ ।

୬ । ନଗରେ—ପୁରରେ । ନଗରେ ନଗରେ—ପର୍ବତ ଉପରେ ଓ ବୃକ୍ଷରେ । ରତ—ରମଣସୁଖ । ରଢ ରଢ—ରଢ ରଢକର ଅର୍ଥାତ୍ ଛଟଛଟ କର । ଚନ୍ଦ୍ରା କଥାବାରୁ ରତିକ ପ୍ରମାଣ ସୁଖର ସୃଷ୍ଟି ମନରେ ଦାରୁଣ କଷ୍ଟ ଉପୁଜଉଅଛୁ । ତାଙ୍କର ତନ, ଚନ୍ଦ୍ର ଅର୍ଥାତ୍ ଆନନ୍ଦଦାୟକ, କାନ୍ତ ଯେ ବସନ୍ତକାଳ ତହିଁର କାନ୍ତ ଅର୍ଥାତ୍ ମନୋହର, କାନ୍ତ ବା ଚନ୍ଦ୍ର ହୋଇ ଅମ୍ଭ ମନକୁ ଚନ୍ଦ୍ରକାନ୍ତ ମଣିରୂପେ ତରଳାଉଅଛୁ ।

୭ । ଶ୍ରୀକର—ଶ୍ରୀକୃଷ୍ଣ । ଶ୍ରୀବାସ—ଶ୍ରୀକୃଷ୍ଣ । ବନପ୍ରିୟ—ବନଉଦାସୀ । ବନପ୍ରିୟ ପ୍ରିୟ—କୋକିଳ ସ୍ନେହୀ । ବନପ୍ରିୟ ଭାବ—କୋକିଳର ଡାକକୁ ଛଡ଼ାଇବାରୂପ ଅବଶ୍ୟାସୀ ଭାବ । ଗରବ ଇନ୍ଦ୍ର—ଗର୍ବରେ ଇନ୍ଦ୍ର ପର ହୋଇ ।

୮ । ବନ୍ଧୁଜୀବ—ବନ୍ଧୁଲି । ଜାଡ ଦେଲେଶେଯ ଶେଯାନ୍ତି, ପୁଣି ଜାଡ ଅର୍ଥାତ୍ ଜାଡ଼ ଫଳରେ ଶେଯ ଶେଯାନ୍ତି ।

୯ । ଝଷକେତୁ—କନ୍ଦର୍ପ, କେତୁଉଦୟ—ପତାକା ଦେଖିବାରୁ । ଉଦୟ—ଅମୃତ ଫଳପଣିଅ । ମନୁ—ଯୁଗ ।

୧୧ । ମଦନସୁତ—କୋକିଳ ।

୧୨ । ବଦ୍ରୁମ—ପୋହଳା । ଅଧର ଅଧର—ତଳ ଓଠର ଅଧର—ଅଧଃ ଅର୍ଥାତ୍ ତଳପଟକୁ ସରନ୍ତେ ।

୧୩ । କାନ୍ତ—ମଧୁର । ଫୁଲବିଶିଖ—କନ୍ଦର୍ପ । ବିଶେଷ—ବିଶେଷଭାବେ ମନ୍ମଥ । ବିଶିଖ—ବାଣ । ଝୋଲାଇବୁ—ଛଡ଼ାଇବୁ । ଠଗବର—ଠକଙ୍କ ଶ୍ରେଷ୍ଠ । ବରହଧର—ମୟୂରଚନ୍ଦ୍ରିଆ । ଧର ଧର—ମନ୍ଦର ପର୍ବତ ଟେକା ।

୧୪ । ଜୀବନ—ପ୍ରାଣ, ଜୀବନ—ପାଣି, ଜୀବନରୁହ—ପଦ୍ମ ବିଧୁ—ଚନ୍ଦ୍ର ବିଧୁ—କର୍ପୂର, ବିଧୁ—ହଳଦୀ । ଚତୁର—ଶୃଗ, ଚତୁର ଶୃଗ, ଚତୁର—ବୁଦ୍ଧିମାନ, ଚତୁର ଆନନ—ବ୍ରହ୍ମା ।

୧୫ । ଅତନୁ—ଅଶରୀରୀ, ଅତନୁ—ମଦନ, ଅତନୁ—ଯାହା କ୍ଷୀଣ ନ ଥିଲ ଏପରି ତନୁକୁ ଅତନୁ ଅର୍ଥାତ୍ ତନୁପଦବାଚ୍ୟ ହେବାକୁ ଅଯୋଗ୍ୟ କରି ସାରିଲଣି । ହରି—ଶ୍ରୀକୃଷ୍ଣ ହରି—ହରଣକର । ଏହୁ ବିପଦ—ଏବିପଦରେ ଅମ୍ଭେ ତାଙ୍କ ବିପଦପଦ ଅର୍ଥାତ୍ ବିପଦର ଆଧାର ଏ ନାମ ଦେବାକୁ ଅକ୍ଷମ ଅଛୁଁ ।

୧୬ । ମାଧବ—ଶ୍ରୀକୃଷ୍ଣ, ମାଧବ—ମଧୁମାସ । ଅନଳେ—ଦବାଗ୍ନି । ତାଙ୍କ—ତାଙ୍କର ଉରସେ ଅର୍ଥାତ୍ ବକ୍ଷରେ ଅମ୍ଭେମାନେ ତାର ଅର୍ଥାତ ଉଜ୍ଜ୍ୱଳ ତାରହାର ବା ମୋତିହାରର ଶୋଭା ଧରୁଥାଉଁ; କିନ୍ତୁ ସେ ଗଲାଦିନୁଁ ଆହାର, ହାର ଏ ସବୁ ଛାଡ଼ି ହାହା ରବ କେବଳ ମୁଖରୁ ଉଚ୍ଚାରୁଅଛୁଁ ।

୧୭ । ଶୃଙ୍ଗରେ—ପୂର୍ଣ୍ଣିମୀରେ । ଶୃଙ୍ଗରେ—ଚନ୍ଦ୍ରରେ । ମୋହନ—ଶ୍ରୀକୃଷ୍ଣ । ମୋହନ—ମଧୁର । ବରଜ ଅର୍ଥାତ୍ ବ୍ରଜପୁର, ବରଜଅନ୍ତରେ—ଗୋଗୋଷ୍ଠ ଅଟେ଼ ବରଜ ଅର୍ଥାତ୍ ପଥ ରହୁଅଛି ।

୧୮ । ଦରଦରହାସ—ସ୍ମିତ । ରଙ୍ଗେ—ଅନୁରାଗରେ । ଦ୍ୱିଜରାଜ—ଚନ୍ଦ୍ର, ଦ୍ୱିଜରାଜରାଜ—ଗରୁଡ଼ର ପ୍ରଭୁ ଶ୍ରୀକୃଷ୍ଣ । ରମା—ସୁନ୍ଦରୀ, ରମା—ସ୍ତ୍ରୀ, ରମା—ସୁନ୍ଦର, ବନୀ—ବୃନ୍ଦାବନ, ମୃଗ—କସ୍ତୁରୀ, ମୃଗ—ମିରଗ ।

୧୯ । ଅଶା—ଦିଗ । ନଅଳୀ ଫୁଲକୁ ଧଉ ନଥାଳୀ ଅର୍ଥାତ୍ ଯାହାଙ୍କର ସଙ୍ଗେ ଅଳୀ ନ ଥାନ୍ତି ସେହି ଶ୍ରୀକୃଷ୍ଣଙ୍କ ମୁଣ୍ଡରେ ଅଳୀ ଅର୍ଥାତ ସଖୀ ଭାବରେ ଖୋସିଦେଉଥାଉଁ ।

୨୧ । ରୂପଚାହିଁକ ଶ୍ରୀକୃଷ୍ଣ ଉପେ ଯାଉ ନିରାଶ କଲେ ଏହି ଦୁର୍ବିସହ ଦୁଃଖ ଜୀଇରହି ସହିବାକୁ ପଡ଼ୁଅଛି । ସୁରପତି ଇନ୍ଦ୍ର ଇନ୍ଦ୍ରପଦ ଛାଡ଼ି ନାଗେଶ୍ୱର ଯେ ଶେଷ ଦେବ ତାଙ୍କପରି ନୀଚରେ ଅର୍ଥାତ୍ ପାତାଳରେ ନାଗେଶ୍ୱର ଅର୍ଥାତ୍ ପାତାଳେଶ୍ୱର ହୋଇ ପୃଥିବୀକି ମୁଣ୍ଡାଇଲେ ତାଙ୍କର ଯେପରି ଅଧୋଗତି ଜନିତ ବେଦନା ହୁଅନ୍ତା ଆମ୍ଭର ସେହିପରି ହୋଇ ଅଛି । ସ୍ୱପତି ବିପତ୍ତି—ବିପତ୍ତିର ଯେ ବିପତ୍ତି ଅର୍ଥାତ୍ ଖଣ୍ଡନକାରୀ ।

୨୨ । ରହେ—ନିର୍ଜନେ, ଏକାକୀ । ଫଗୁଣ······ରହିରେ ଅନାକାର ବିପତ୍ତି ହୋଇ ଆମ୍ଭର ଫଗୁଣ ଯେ ସୁଖ ତାକୁ ନାଶ କରୁଅଛି ।

୨୩ । ବିପୀନ—ବିଶେଷରୂପେ ପୀନ ଅର୍ଥାତ୍ ପାନ୍ତ୍ର । ବିପିନ—ବନ । ବିପିନ ଶବଦେ—ବନଜାତ ଶବ୍ଦରେ । ବନମାଳୀ ମାଳୀ—ଶ୍ରୀକୃଷ୍ଣ ମାଳୀ ହୋଇ ।

୨୫ । ବାରଣ—ହାତୀ, ବାରଣ—ନିବୃତ୍ କରିବା । କେଶରୀ—ସିଂହ । ମଧୁହାରୀ—ମଧୁସୂଦନ । ମଧୁହାରୀ ଗୁଣ—ଭ୍ରମର ଗୁଣ ।

୨୭ । ଜୀବ—ଜଉବନ—ଜୀବନ ରୂପକ ଜଉର ବଣ । ଜୀବନଦ—ମେଘ । ଗଣନାରୁ—ଲେଖାରୁ, ତାଲିକାରୁ ।

୨୭ । ରାମ ଲକ୍ଷଣ—କୃଷ୍ଣ ବଳରାମ । ଲକ୍ଷଣ—ଲକ୍ଷଣବନ୍ତ । ରତୀଶ—କନ୍ଦର୍ପ । ଭିତ୍ତିରେ ଚିତ୍ରିତ— କାନ୍ଥରେ ଲେଖା ହୋଇଥିବା ଚିତ୍ର ପ୍ରତିମା ପରି । ରମଣୀର ଅର୍ଥ ପ୍ରୀତିର ମଣିସ୍ୱରୂପା ରମଣୀ ଅର୍ଥାତ୍ ଅଙ୍ଗନାଙ୍କର ମଣି ଅର୍ଥାତ୍ ଅଗ୍ନିପରି ମନେ କରି ଛିବଗ୍ରାସ୍ତ ଚାଲିଗଲେ ଓ ଆମ୍ଭର ସର୍ବସ୍ୱ ସଙ୍ଗରେ ନେଇଗଲେ ।

୨୮ । ଭ୍ରମର ଭ୍ରମର ଭ୍ରମର—ଭ୍ରମଣଶୀଳ ଭ୍ରମରରୂପ ନାଗର । ଲୟ—ଲୀନ ।

୩୨ । ପରେତରାଜନ—ଯମ ।

୩୩ । ଦର—ଭୟ । ଶୂନ୍ୟପଦେ—ଆକାଶରେ ।

---

## ଶ୍ରୀରାଧାବିରହ ଚଉତିଶା

୭—ଚଣ୍ଡକର ସୁତାପତି—ଯମୁନା ବିହାରି । ୯—ଝଗଡ଼େ—ବିବାଦକର । ୧୦—ଯାବ ବନ୍ଧନମୁକ୍ତ—ଶୋଧଣି ପଠାଇଲେ । ୧୧—ବିସୋର—ପାସୋର । ୧୨—ଛଦ୍ମନା—କପଟିଥି । ୧୩—ହୁତବହ—ଦାହକ, ଅଗ୍ନି । ୨୩—ବିନୋଦ—ବିନୟ । ୨୭—ମୃଗୀ—ହୃଗୀ । ୩୪—ଛାମୁ—ଛମୁ ।

---

## ଉଦ୍ଧବ ଚଉତିଶା

୭—ଛଡ଼ଚନ···ସୋଶବଷଯୁକ୍ତକଥା । ୧°—ଟଙ୍କଧର ପରୀଯାନ ହିଂଦ୍ଧ । ୧୪—ଚକ୍ର—ଛଡ଼ଚକ୍ରଅଦ···ଯୋଗକଥା ୧୯—ଧଇଧର—ପଦ୍ମଟେଟକା । ୨୦—ମୀଉନଯୋନବାହନ—ହଂସ ।

---

## ରସକଦମ୍ବ ଚଉତିଶା

୨—ବସ୍ତନ୍ତ—ବାହୁସ୍ତ୍ରୀମାନଙ୍କ । ୩—ଗଢ—ସ୍ୱର ଦେଇ । ଘାଉ—ଘାଉଡ଼ । ୧୫—ଅସଧରେ ଭ ସଧ କରଇ—ଯେଉଁଠାରେ ପ୍ରୀତି ନ କରିବାର ସେହିଠାରେ କରୁଅଛୁ । ୨୨—ଫଉଲାଉଛୁ—ପ୍ରକଟକରି ଦେଖାଉଅଛୁ । ଫନା—ବେଉସା । ୩୦—ବାନ୍ଧୁଥାନ୍ତି—ଦୋଷୁଥାନ୍ତି । ଟାହି—ଥଟା ।

---

## —ଫୁଲବଉଳବେଣୀ ଚଉତିଶା—

୩—ମୀନା—ପାହୁକା । ୧୮—କଞ୍ଜ—ପଦ୍ମ । ୩୪—ଷଣକାନ୍ତକାନ୍ତ—ବିଦ୍ୟୁତ୍‌ବରନା ।

---

## କୋଳାହଳ ଚଉତିଶା

ବଧିର—ବିକଳ । ତନୁ—କ୍ଷୀଣ । ୩—ଗୁରୁନିତମ୍ବିନୀ—ଗୁରୁଯୌବନୀ । ୭—ଚଣ୍ଡକର—ସୂର୍ଯ୍ୟ । ଶ୍ୱମୀକର—ସୁନା । ୧୫—ତା ବନତା···ଅର୍ଥାତ୍ କାମ ଆମ୍ଭ ଦୁହିଙ୍କଠାରୁ ରଭ ଶୃଙ୍ଖୁଅଛୁ । ୧୯—ଶ୍ରୀରଙ୍ଗ ମଣ୍ଡଳ ମଣ୍ଡନ—ଶ୍ରୀକୃଷ୍ଣ ଅଳଙ୍କାର ଖଞ୍ଜିଦେଏ ।

---

## ପ୍ରୀତିଚିନ୍ତାମଣି ଚଉତିଶା

୧—ବିଟପପ୍ରେମ—ପରକୀୟପ୍ରୀତି । ୨—ଖେଦଗାଢ଼—ଦୁଃଖର ବନ୍ଧନ । ହୃଦକେଦାରେ—ଚିତ୍ତକ୍ଷେତ୍ରରେ । ୫—ଗୁଣାକଥାକୁ—ନିନ୍ଦାକଥାକୁ । ୬—ଚେଲାଞ୍ଚଳନିଧି—ଅଞ୍ଚଳନିଧି । ୭—ଜଗମାଳ—ସୂର୍ଯ୍ୟ । ୭—ଛନ୍ଦକାଞ୍ଚ—ଚନ୍ଦ୍ରଚମ୍ପକକଳ୍ପବାଳ୍ପ । ୨୩—ବଧୂ—କର୍ପୂର । ୨୭—ରସାଣକାଳଅ—ଚକ୍ଷଣ କାଳଅ । ୩୨—ମୋଦ—ଆନନ୍ଦ । ୩୮—ଦଳୀପ୍ରେଂପୂଟଳ—କଦମ୍ବମୂଳ । ଦ୍ୱରିତବସନ—ପୀତବସନ । ୩୪—ଗୋକୁଳ କଳାକର—ଗୋପଚନ୍ଦ୍ରମା ।

---

## ରାଧାକୃଷ୍ଣମିଳନ ଚଉତିଶା

୧୬—ନାସ୍ତ୍ରିକେଲ ଫଳପର ବୃତ୍ତ—ଉପର ଠାଣ, ଭିତର ସରସ । ୧୭—କାତ୍ୟାର—କମିଅ ।

---